



ପ୍ରାଚୀ ଗ୍ରନ୍ଥମାଳା — ଏକତ୍ରିଂଶ

# ଚଉତିଶା-ମଧୁଚକ୍ର




ପ୍ରାଚୀ ସମିତି

# ଚଉତିଶା-ମଧୁଚକ୍ର

( ତୃତୀୟ ଖଣ୍ଡ )

---

ପ୍ରାଚୀ ସମିତି ପକ୍ଷରୁ

**ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ବି: ଏ: ଙ୍କ**

ଦ୍ୱାରା ସଙ୍କଳିତ

ଓ

ଚଉତିଶା ଚନ୍ଦ୍ରିକା ଟୀକା ସହ

ସମ୍ପାଦିତ

---

ପ୍ରକାଶକ :—

**ପ୍ରାଚୀ ସମିତି, କଟକ**

ମୂଲ୍ୟ ଅଠଅଣା

# ସୂଚୀପତ୍ର

ବିଷୟ — ପୃଷ୍ଠାଙ୍କ





# ଚଉତିଶା ମଧୁଚକ୍ର

## ମଥୁରାବିଜେ ଚଉତିଶା

( ରାଗ କଲହଂସକେଦାର )

କାବ୍ୟସ୍ୱର୍ଗ ଗୀତକାବ୍ୟରେ ମଥୁରାବଳେ ଚଉତିଶାର ଜନପ୍ରିୟତା ଅଧିକ ଥିବାର ବୋଧହୁଏ । ଭକ୍ତଚରଣଙ୍କ ମଥୁରାମଙ୍ଗଳର "କୃଷ୍ଣ କହନ୍ତି ଶୁଣ ବରଜ ବଧୂ ମୂଳକ ତାର ମଥୁରା ପଦରେ ଏ ଚଉତିଶାର ବିଶେଷ ସ୍ପୃହା ଦେଖାଯାଏ । ଅନେକ ଶୈଶବରେ ଜନନୀଙ୍କ ମୁଖରେ ଏ ଚଉତିଶାର କେତେକ ପଦ ଶୁଣିଥିବେ ଓ ସେହି ଦିନୁ ଏହାର ମାଧୁରୀର ଶୀନ୍ଦୁକାଳ ପ୍ରଭାବ ଅନ୍ତ ମନକୁ ଅଧିକାର କରିଥିବ । କବି ଗୋପୀନାଥ ବିଷୟ ଜାଣିବାର ଅବକାଶ ରହିନାହିଁ ଅଥବା ତାଙ୍କର କୌଣସି ଗ୍ରନ୍ଥ କବିତା ହସ୍ତଗତ ହୋଇ ନାହିଁ । କିନ୍ତୁ ମଥୁରାବଳେ ଚଉତିଶା ତାଙ୍କୁ ଯେଉଁ ସ୍ଥାନର ଅଧିକାରୀ କରିଅଛି ତାହା ଅକ୍ଷୟ ଓ ମୃତ୍ୟୁଂଜୟ ।

କହନ୍ତି କୃଷ୍ଣଚନ୍ଦ୍ର ରାଧିକା ପାଶ
କଂଜ-ଉଦରୁ ଅଳି ଯୋଗେ ପ୍ରବେଶ ଗୋ ।
କାଲି ମଥୁରା ଯିବୁଁ ଶୁଣ ହେ ସଖି !
କରିବ ନାହିଁ ଚିନ୍ତା ଅମ୍ଭ ନ ଦେଖି ଗୋ । ୧ ।

୧—* ଶୁଣ ସୁମୁଖି ! ( ଘ ) ।

ଖର ନିଶ୍ୱାସ କ୍ରୋଧେ ବୋଲନ୍ତି ସଖୀ
ଖଣ୍ଡିବ କେଉଁ ଆମ୍ଭ କନ୍ଦର୍ପବାଧା ହେ ।
ଖିଳବ୍ରହ୍ମାଣ୍ଡନାଥ ! ମଥୁରା ଯିବ
ଖଟାଇଥିଲୁଁ ପଦ୍ମପାଦରେ ଜୀବ ହେ । ୨ ।

ଗୋପାଳ-ପୋଷ୍ୟେ ଥିବେ ଆମ୍ଭ ସଙ୍ଗର ।
ଗଜଗମନି ! ମନେ ଆନ ନ ଧର ଗୋ ।
ଗରବ କରି କଂସ ଦୂତ ପେଷିଛି ।
ଗୋପରୁ କୃଷ୍ଣଚନ୍ଦ୍ର ଆଣ ବୋଲିଛି ଗୋ । ୩ ।

ଘୋର ଅନେକ ତପେ ତୁମ୍ଭଙ୍କୁ ପାଇଲୁଁ ।
ଘେନଣ ରସ ଦବା ବଞ୍ଚୁଣଥିଲୁଁ ହେ
ଘେନି ଯାଉଛି ଗୋପନଗରୁ ଟିଗ୍ର
ଘୋର ସଙ୍କଟୁ କେହୁ କରିବ ପାର ହେ । ୪ ।

ନନ୍ଦନନ୍ଦନ କହେ ଶୁଣରେ ସଖି !
ନଗ୍ର ମଥୁରା ବାରେ ଆସିବୁଁ ଦେଖି ଗୋ
ନାହିଁ ନ କର ତୁମ୍ଭେ ଯୁବତୀବର !
ନିଶ୍ଚେ ଯାଇ ଆସିବୁଁ ସତ୍ୟ ଆମ୍ଭର ଗୋ । ୫ ।

ଚତୁରୀ ରାଧା କହେ ଅକ୍ରୂର ଯାଉ
ଚକ୍ରଧର ନଇଲେ ରାଜାକୁ କହୁ ହେ
ଚର-ବଚନେ ଯେବେ କରିବ କୋପ
ଚଳ ସମସ୍ତେ ଛାଡ଼ିଯିବା ଏ ଗୋପ ହେ । ୬ ।

୨—୪ ଖଟାଇଥିଲୁଁ ( କ ) । ୩—୪ ଘନକୃଷ୍ଣ ଅଣ ବୋଲୁଛି ଗୋ । ( ଖ )
୪—୧ ଘୋରେ ପାଇଲୁ (ଗ) ୫—୨ ନଗ୍ର ମଥୁରାପୁର ( କ ) ।

ଛଟଲେ ଦୂଟିଲ୍ଲ ସୂତ ଅସ୍ପୃଷ୍ଟ ବାନ୍ଧୁ
ଛଦ୍ମନକଥା ସଖି ! କହ କପାଇଁ ଗୋ
ଛଡ଼ ବିମନ ମନେ ଆନ ନ ଧର
ଛିଡ଼ନ୍ତି ଶସ୍ତ୍ର ଯାଙ୍କୁ ସଂଗ୍ରାମେ ସ୍ମର ଗୋ । ୭ ।

ଜଗତବନ୍ଧୁ ! ତୁମ୍ଭେ ଯଶୋଦାସୁତ
ଯାମଲା ବକା ଅର୍ଦ୍ଧା କଲ ନିପାତ ହେ
ଜୀବନ-ତୃଣବନ ଅଗ୍ନି ଦହୁଛି
ଜାଣି ଅର୍ଚ୍ଚିଲ୍ଲ ଫଳ ଆନ ନେଉଛ ହେ । ୮ ।

ଝର ଝର ଝାୟୂନ୍ତ ବହଇ ନୀର
ଝୁରୁଣ୍ଟିଛନ୍ତି ପିତା ମାତା ଅମ୍ଭର ଗୋ
ଝଗଡ଼ କର ଦୂତ କଂସ ପେଷିଛି
ଝିମିଝିମି ନ ବୁଝାଇ ଥାଣ ବୋଲୁଛ ଗୋ । ୯ ।

ଞାଟବର-ଶିରୋମଣି ମୁରାରି !
ଞଷ୍ଟେ ପଡ଼ିଲେ ମନେ ମଥୁରାବାସୀ ହେ
ଞାଗରୀ ସଙ୍ଗ ପାଇ, ଆମ୍ଭଙ୍କୁ ମୂର୍ତ୍ତି ।
ଞିମିଷ କୋଟି ଯୁଗ ପ୍ରାୟେ ମଣୁଛୁ ହେ । ୧୦ ।

ଟଙ୍କଧର ଜାଣନ୍ତି ଅମ୍ଭର ମନ
ଟାକ ବିଧାତା ଆଣି କଲକ ଉନ୍ମ ଗୋ
ଟାଣ ଯେ କହ ନୁହେ ରାଜା-ହୃଦକୁ
ଟିକାଏ ମୂର୍ତ୍ତି ନୁହେ ତୁମ୍ଭମାନଙ୍କୁ ଗୋ । ୧୧ ।

୭—୩ ଅନ୍ୟ ନ ଧର (ଖ) । ୮—୩ । ୪ ଗ ପୋଥିରେ ୪ । ୩ ବୃନ୍ଦ ପଠିତ। ୮—୪ ଅନ୍ୟ ନେଉଛ ହେ । (ଙ) ୯—୪ ରାମକୃଷ୍ଣ ଅଣ (ଚ) । ୧୦—୩ ନାଗରୀ ସଙ୍ଗେ ଥିବ (ଛ) । ୧୧—୪ ମନ ମୂର୍ତ୍ତି ଥିବ ଅମ୍ଭର (ଜ)

ଠାକୁର ନନ୍ଦସୁତ ଗୋପେ ବୋଲାଅ
ଠାର ଗୋପୀଙ୍କି କୁଞ୍ଜବନକୁ ନଅ ହେ
ଠାବ କରବ କେହ୍ନେ ତୁମ୍ଭର ଗୁଣ
ଠିକେ ଶୋଷିଲ ତୁମ୍ଭେ ପୂତନା ପ୍ରାଣ ହେ । ୧୨ ।

ଡମ୍ବରୁଧର-ରିପୁ-ଜନକ ଭଣି
ଡର ହୃଦରୁ ଛଡ଼ ପ୍ରାଣମିତଣି ! ଗୋ
ଡରାଉଥିଲା ଇନ୍ଦ୍ର ହେଲେ କିଙ୍କରୁଁ
ଡେଉଁ କାଳନ୍ଦୀଜଳେ କାଳି ମର୍ଦ୍ଦିଲୁଁ ଗୋ ।୧୩।

ଢୋକରୁଁ ବିଷ ଅମ୍ଭେ ତୁମ୍ଭ ବନ୍ଧୁନେ
ଢାଳେ ନିର୍ଦ୍ଦୟା କରି ଯିବ କେସନେ ହେ ।
ଢଳ ଯେ ନାଚୁଥାଅ ଗୋପୀଙ୍କ ମେଳେ
ଢାଳେ ମୂର୍ଚ୍ଛିବୁଁ କାହିଁ ଏ ପ୍ରାଣ ଥିଲେ ହେ ।୧୪।

ଅଣି ବିଧାତା କଲା ଗୋପରେ ଜାତ
ଅଣି ତୁମ୍ଭ ଅମ୍ଭନ୍ତ କଲା ଏକତ୍ର ଗୋ
ଏଣୀନୟନ ! ମନେ ଆନ ନ ଧର
ଅଣଆୟତ୍ତ ପକ୍ଷି ! ହେଲା ଅମ୍ଭର ଗୋ । ୧୫ ।

ତୁମ୍ଭର ପାଇଁ ଅମ୍ଭେ ତପ ସାଧିଲୁଁ
ତୁରତେ ହର ପୂଜି ବର ମାଗିଲୁଁ ହେ
ତକ୍ଷଣେ ଉମାକାନ୍ତ ପ୍ରସନ୍ନ ହୋଇ
ତ୍ରୈଲୋକ୍ୟ-ନାଥ ଗଲେ ଏ ବର ଦେଇ ହେ ।୧୬।

୧୨—୪ ଠିକେ ଶୋଷିଲ ପ୍ରଭୁ (ଗ) । ୧୪—୪ ଢାଳନୟନେ ଢୁଲେ ମୂର୍ଚ୍ଛି ଯିବେ (ଚ) । ୧୫—୨ ତୁମ୍ଭ ଅମ୍ଭଙ୍କୁ (ଙ) ୧୬—୩ ତକ୍ଷଣେ ବିଶ୍ୱନାଥ (ଙ) ।

ଥାନ ଛାଡ଼ଣ ଯିବୁଁ ମଥୁରାପୁର
ଥିବ ଟି ଅମ୍ଭ କଥା ତୁମ୍ଭ ମନର ଗୋ
ଥିବ ଟି ଅମ୍ଭ ମନ ତୁମ୍ଭର ତହିଁ
ଥିଲ ପର୍ଯ୍ୟେ ମଣୁଥିବ ଟି ସହି ଗୋ । ୧୭ ।

ଦୀନଜନଙ୍କ ବନ୍ଧୁ ! ଦୁଃଖୀ-ସୋଦର
ଦଶଦ୍ରନ୍ଲୋକନାଥ ପୁରୁଷବର ହେ
ଦୟା ଦେଖାବ ତୁମ୍ଭେ ଗୋପ-ଗୋପୀଙ୍କି
ଧନ ବସ୍ତ୍ରକୁ କାହା ଯେନ ଏଣିବ ହେ । ୧୮ ।

ଧରଣୀଧର କହେ ଶୁଣ ରେ ସଖି !
ଧନ୍ୟ ଉଦ୍ଧବ ଯାହା ଅସିବୁଁ ଦେଖି ଗୋ
ଧରୁଛ ମନେ କପାଁ ବିମନ ତୁମ୍ଭେ
ଧାଡକାରେ ଯାଇଣ ଅଧିକୁଁ ଅମ୍ଭେ ଗୋ । ୧୯ ।

ନନ୍ଦନନ୍ଦନ ଅଟେ ଅମ୍ଭ ପରାଣ !
ନଷ୍ଟେ ନ ଆସ ତୁମ୍ଭେ ଶ୍ରୀକୃଷ୍ଣ ଶୁଣ ହେ
ନୂଅବୟସୀ ଅମ୍ଭେ ଗୋପିକାଜନ
ନିର୍ମାଖୀ କରଯିବ ମଧୁସୂଦନ ହେ । ୨୦ ।

୧୭—୧ ଥିବ ପରପ୍ରେ ମଣି ଥିବଟି ଗୋହ ଗୋ (ଖ) । ଥିବଟି ସଖି ତୁମ୍ଭେ ଅଟନ୍ତି ଥାଅ ଗୋ (ଗ) । ୧୮—୪ ଦୟା ଛଡଲ ନସ୍ତେ (ଖ) ।

୨୦—ନାହଟେ ଦାଣ ଛଡ଼ ଅମ୍ଭର ପ୍ରାଣ । ନିର୍ମଣୀ କରିଯିବ ନନ୍ଦ ନନ୍ଦନ ହେ ।
ନିଅବଦ୍ୟସୀ ଅମ୍ଭେ ଏ ଗୋପୀଜନ । ନଷ୍ଟପ୍ରେ ନ ଅଟିବ ମଧୁସୂଦନ ହେ । (ଙ)
ନାହଟେ ଦାଉଦ୍ ଦହୁଛି ପ୍ରାଣ । ନିଷ୍ଟେ ନଇଲେ ତୁମ୍ଭେ ଶ୍ରୀବତ୍ସ ଲାଛ ହେ
ନୂଅବୟସୀ ଅମ୍ଭେ ଗୋପିକା ଜନ । ନରଣ କରିଯିବ ମଧୁସୂଦନ ହେ । (ଚ)

ପରମାନନ୍ଦ କହେ ଶୁଣ ରେ ସଖି !
ପଦ୍ମ ହେଜିବ କାହିଁ ମଧୁପ ପକ୍ଷୀ ଗୋ ।
ପାଇବୁଁ ଜଳ ଠାବ ରହିବୁଁ ଆମ୍ଭେ ।
ପ୍ରବେ ଏମନ୍ତ ସଖି ! ମଣ କି ତୁମ୍ଭେ ଗୋ । ୨୧ ।

ଫେଡ଼ି ଦୁଃଖସାଗରେ ଆମ୍ଭଙ୍କୁ ଦେବ
ଫୁଲଣା ହୋଇ ମଧୁପୁରେ ରହିବ ହେ ।
ଫଳଲା କର୍ମ-ଫଳ ଏବେ ଆମ୍ଭର
ଫାନ୍ଦେ ପକାଇ ଯିବ ଜଶୁଦୋଦର ହେ । ୨୨ ।

ବନ୍ଧୁବଦନୀ ବନମାଳୀ ବଚନ
ବ୍ରଜଯୁବତୀ ସବେ ମିଳ ସେଠାର ଯେ ।
ବୋଲନ୍ତି କୃଷ୍ଣଚନ୍ଦ୍ର ଗୋପୀଙ୍କି ଚାହିଁ
ବୋଧ ଅକ୍ରୁର ତୁମ୍ଭେ ସମସ୍ତେ ଯାଇଁ ଗୋ । ୨୩ ।

ଭାବରେ ଯୋଗୀଜନେ ଭେଟି ନ ପାଇ
ଭାବରେ ବଶ କଲେ ଗୋପର ଝିଅ ଯେ
ଭବାନୀ-ପତିତରପୂଜିତ-ଚରଣ
ଭାବେଣ ଗୋପୀନାଥ ପଦେ ଶରଣ ଯେ । ୨୪ ।

ମାଧବଙ୍କ ଛନ୍ଦି ଏସନ ଶୁଣି
ମୋହ ଡେଜି ଉଠିଲେ ବ୍ରଜତରୁଣୀ ଯେ
ମୋହନ ମୋହନୀର ଧରଣ କର
ମିଳଲେ ସର୍ବ ଗୋପୀ ନନ୍ଦ ମନ୍ଦର ଯେ । ୨୫ ।

୨୧—୪ ପ୍ରତକ୍ଷେ ମଜେ କଣ୍ଠ ଧରିଛ ତୁମ୍ଭେ ଗୋ (ଗ)
୨୨—୧ ପାଇ (ଖ, ଗ) ୨୨—୨ ଫୁଲ୍ଲଣା (ଖ, ଚ) ମଥୁରାବରେ ଥିବ (ଙ)
୨୫—୨ ମନ୍ଦ ତନ୍ଦ୍ରା ଛଡିଲେ ସର୍ବତରୁଣୀ (ଗ)

ଯଶୋଦା ଆଗେ ଗୋପୀ କାନ୍ଦଣି କହି
ଯାତ୍ରା ଦେଖିଣ ଯିବେ ତୁମ୍ଭ ତନଇ ଗୋ
ଯାଉ ଜୀବନ ମହୀ ଲୋଟି ଏ ପିଣ୍ଡ
ଯାନ ଭାଙ୍ଗି ଛେଚବୁ ଅକ୍ରୂର ମୁଣ୍ଡ ଗୋ । ୨୬ ।

ରାଜୀବନେତ୍ର ହସି ଗୋପୀଙ୍କି କହି
ରାଜା-ଦୋରେହା ହେଲେ ରାଜ୍ୟ ନ ଥାଇ ଗୋ
ରାଜା-ହୃଦଙ୍କୁ ତୁମ୍ଭେ ଆମ୍ଭଙ୍କୁ ଦେବ
ରାଜ୍ୟ ନଷ୍ଟିନ୍ତେ ଗୋପୀ ଗୋପରେ ଥିବ ଗୋ । ୨୭ ।

ଲଭିଲା ମାୟା ସର୍ବ ଗୋପୀଜନଙ୍କୁ
ନଧୃନ ରୋଷି ଏବେ ଷ୍କନ୍ଦେଁ କୃଷ୍ଣଙ୍କୁ ଯେ
ଲୋକ ବଡ଼ ଗହଳ ନନ୍ଦ ମନ୍ଦିର
ଲବଣ୍ୟନିଧି ଯିବେ ମଥୁରାପୁର ଯେ । ୨୮ ।

ବରଜବାଳୀ ସର୍ବେ ମଙ୍ଗଳ କରି
ବନ୍ଦାନ୍ତ ଅର୍ଘ୍ୟ ଘେନ ଶ୍ରୀ ବନମାଳୀ ଯେ
ବେଣୁ ବଇଁଶି କରେ ବ୍ରଜକୁମାରେ
ବସିଲେ ଯାଇଁ କୃଷ୍ଣ ରଥ ଉପରେ ଯେ । ୨୯ ।

ଶ୍ରୀକୃଷ୍ଣ ଆଜ୍ଞାଦେଲେ ଅକ୍ରୂର ବସ
ଶୀଘ୍ର ହୋଇଣ ଯିବା ମଥୁରା ଦେଶ ଯେ
ଶିରେ ଘେନଣି ଆଜ୍ଞା ବାହିଲା ରଥ
ସଧୀରେ ଯମୁନାରେ ମିଳ ଭୁରତ ଯେ । ୩୦ ।

୨୭—୧ ସର୍ବ ଗୋପ'ର କହି (କ) । ୨୮—୩ ନନ୍ଦକୁ ଥରେ ବନ୍ଧୁ ଲୋକ ଗହଳ ( ଗ ) । ୨୯—୩ ଗୋପ କୁମରେ ( ଗ ) ।

ସ୍ନାନଦାନ ଯମୁନାରେ ଅକ୍ରୂର ସାରି
ଶ୍ରୀକୃଷ୍ଣ-ମୁଖ ଦେଖି ଦୁରିତ ହରି ଯେ
ଶୀଘ୍ରେ ବାହିଲା ରଥ ମଥୁରାପୁର ।
ସାନନ୍ଦେ ଦେଖୁଛନ୍ତି ସ୍ୱର୍ଗ ଅମର ଯେ । ୩୧ ।

ସାଠି ରଜକ ହଣେ ମାଲୀ ଦୁଆରେ
ସଜ ଫେଇଣ ମାଲା ଦେଲା କଣ୍ଠରେ ଯେ
ସଜ ପେଡ଼ାରୁ ଗନ୍ଧ କୁବୁଜୀ ଦେଲା
ଶ୍ୟାମସୁନ୍ଦର କର ଲଗି ତରଳା ଯେ । ୩୨ ।

ହରଷେ ହର ଧନୁ ଭୋଳ ଥଳେ
ହତ କରଣ ଗଜ ମାଲ ମାଇଲେ ଯେ
ହରି ଯେ ରଙ୍ଗ ସଭା ତଲେ ପ୍ରବେଶ
ହରିଙ୍କି ଦେଖି କଂସ ହେଲା ବିନାଶ ଯେ । ୩୩ ।

ଛଡ଼ିଲା ଚନ୍ତା ମାତା ପିତାଙ୍କ ମନ
ଛନ୍ଦେ ଉଗ୍ରସେନେ କଲେ ରାଜନ ହେ
କ୍ଷମାସାଗର କୃଷ୍ଣ ପଦ୍ମଚରଣ
ଛନ୍ଦେ ଗୋପୀନାଥ ପଶେ ଶରଣ ହେ । ୩୪ ।



୩୩—୩ ହରଷେ ରଙ୍ଗ ସଭା ମଧ୍ୟେ ପ୍ରବେଶ (କ)। ୩୪—୨ ନରେନ୍ଦ୍ର ଶ୍ରେଷ୍ଠ ହେଲେ (ଖ)।

# ଦୀନବନ୍ଧୁ ଚଉତିଶା ।

ଦୀନବନ୍ଧୁ ଚଉତିଶାରେ କରୁଣ ରସର ଯେଉଁ ଅନ୍ତଃପ୍ରବାହ ଅନନ୍ୟ-ସାଧାରଣ । ଭକ୍ତ କୃଷ୍ଣଦାସଙ୍କର ଅତି ଗୋପ୍ୟ ଦୁଃଖ ଗୋଷ୍ଠ ଗଣ୍ଡ ଜଡ଼ିତା ମଧ୍ୟରେ ସ୍ପଷ୍ଟ ଯେ ସେ ଠିକ୍ ଭାବ ଏ ପର୍ଯ୍ୟନ୍ତ ଅନୁଭବ ହୋଇ ପାରି ନାହିଁ । କିନ୍ତୁ ଏହାର ବେଦନା ବଡ ଶକ୍ତିଶାଳୀ । ଦୀନବନ୍ଧୁ ଚଉତିଶା ଶ୍ରବଣ କରି କେତେ ଧର୍ମଶୀଳା ଭକ୍ତିମତୀ ରମଣୀ ଗଦଗଦ୍ ନୟନ ଓ ରୁଦ୍ଧକଣ୍ଠ ହେବାର ଆମ୍ଭେ ଦେଖିଅଛୁଁ ଓ ଯେତେଥର ଦୀନବନ୍ଧୁ ଚଉତିଶା ପଢ଼ିଅଛୁଁ ସେତେଥର ତାହା ଆମ୍ଭକୁ ନୂତନ ବୋଧ ହୋଇଅଛି । ଯାହା ନର ହୃଦର ତାର ବେଦନାର ଶେଷ ନାହିଁ ?

କରନ୍ତି ଭାଳେଣି ସବୁ ଗୋପାଙ୍ଗନା ମିଳି
କଂସ ଦୂତ ସଙ୍ଗତେ ବିଜୟେ ବନମାଳୀ
ଦୀନବନ୍ଧୁ ହେ !
କି ବୁଦ୍ଧି କରବୁଁ
କଲେଣି ମଥୁରା ବିଜେ ପ୍ରାଣ ବିସର୍ଜ୍ଜିବୁଁ । ୧ ।
ଖାଇବାର ବିଷ ପ୍ରାୟେ ନ ରୁଚେ ସଦନ
ଖେଳାଇ ହସାଇ ଆମ୍ଭେ ବଞ୍ଚୁଥିଲୁଁ ଦିନ
ଦୀନବନ୍ଧୁ ହେ !
ଘଣେ ନ ବଞ୍ଚିବୁଁ
ଖଳ ଉପୁଜିଲା କଥା ଲଜ୍ଜା ଲୁହାଇବୁଁ । ୨ ।
ଗୁପତ ହୋଇ ଅଇଲ ଗୋପ ଭୁବନକୁ
ଗରଳ ଅମୀୟ ବୋଲି ଭୁଞ୍ଜାଇ ଆମ୍ଭଙ୍କୁ
ଦୀନବନ୍ଧୁ ହେ !
ଗଳୁଛି ଜୀବନ
ଘିଅ ଧରି ରଖିଅଛ ଏ ଗୋପ ଭୁବନ । ୩ ।

ଘଣ୍ଟ ଥାପି ନୀପ ମୂଳେ ଜଗିଥାଅ ବାଟ
ଘୋର କୁଞ୍ଜେ ବେଣୁ ବାଇ କରାଇ ଉଚ୍ଚାଟ
ଦୀନବନ୍ଧୁ ହେ !
ଘର ନ ମଣିଲୁଁ
ଘର ବର ଦୂସ୍ତ ତେଜ ତୁମ୍ଭରେ ମଜ୍ଜିଲୁଁ ।୪।

ନିର୍ମ୍ମଳ ନୋହିବ ଅଙ୍ଗୁ ସୁଭାଗୀ କାଳନ୍ଦୀ
ନାଚିଲ କାଳୀୟ ଶିରେ ପଦ୍ମପାଦ ଛନ୍ଦି
ଦୀନବନ୍ଧୁ ହେ !
ନ ଯାଇ ବିଘୋର
ନିକୁଞ୍ଜ ବନନ୍ତରେ ନେଇ ଯେତେ ପ୍ରୀତି କର ।୫।

ଚରଣ ଲାଗନ୍ତେ ଭଗ୍ନ ହୋଇଲା ଶକଟ
ଚୂର ଏ କଂସ ତଗର କରାଛୁ ମ୍ଳାଟ
ଦୀନବନ୍ଧୁ ହେ !
ଚୂର୍ଣ୍ଣିଥିବ ତୁମ୍ଭେ
ଚୂପିବୁ ଅକ୍ରୂର ମୁଣ୍ଡ ଖୁଆ ଦଣ୍ଡେ ଆମ୍ଭେ ।୬।

ଛଳ ପ୍ରାୟେ ହୋଇ ଯେବ ଥାଉଁ ହବାହିତ
ଛାଡ଼ି କି ଆମ୍ଭଙ୍କୁ ତୁମ୍ଭେ ଯିବ ଗିରିପତି
ଦୀନବନ୍ଧୁ ହେ !
ଛାଡ଼ ଏ ବିଗ୍ର
ଛମାଶୀଳ ପ୍ରଭୁ ହୋଇ କରୁଛ ନିଷ୍ଠୁର ।୭।

ଜୀବର ଜୀବନ ତୁମ୍ଭେ ଯଦୁକୁଳ ଚନ୍ଦ
ଜାଣିଲୁଁ ଗୋପିକା ଜାତେ ଲଗାଇଲ ଫାନ୍ଦ

ଦୀନବନ୍ଧୁ ହେ!
ଜିବ ମଧୁପୁର
ଯୋଗ ଜାଳ ମଣ୍ଡୁଛ ତୁମ୍ଭର ଆଗର ।୮।
ଝୁରଣ ମରନ୍ତି ମୁଖ ନ ଚାହିଁ ଝଟିପିଟେ
ଝସାଇ କେମନ୍ତେ ତୁମ୍ଭେ ବସିଲାନ ରଥେ
ଦୀନବନ୍ଧୁ ହେ!
ଝମଣ୍ଡେକ ରହ
ଝାସିବୁଁ କାଳିନ୍ଦୀ-ଜଳେ ଦେଖିକରି ଯାଅ ।୯।

ଞକୁଞ୍ଜ ଭୁବନେ ନେଇ କୁଞ୍ଜଲତା ତଳେ
ଞୟୁନ ସଙ୍କେତେ ଯାନା ଠାରୁଛ ସୁସରେ
ଦୀନବନ୍ଧୁ ହେ!
(ନେଇ) ବସାଇ ଲତାରେ
ଞର୍ମିଲ ଅଧରୁ ଯେ ଅମୀୟ ଧାର ଝରେ ।୧୦।
ଟସ୍କର ହୋଇ ଅଇଲ ଗୋପ ଭୁବନକୁ
ଟାଣପଣ କହୁଅଛ ଯିବାର ବେଳକୁ
ଦୀନବନ୍ଧୁ ହେ!
ଟାଣ ଯେ ନ କହ
ଟେକିଛୁଁ ସ୍ତନରେ ଦନେ ସେ କଥା ଚଭୁଅ ।୧୧।
ଠକିଲ ଆମ୍ଭଙ୍କୁ ତୁମ୍ଭେ ଦେଇ ପ୍ରୀତିଭାବ
ଠାବ ଭଲ ପାଇ ଏବେ ମଧୁପୁର ଯିବ
ଦୀନବନ୍ଧୁ ହେ!
ଠକିଲ ଆମ୍ଭଙ୍କୁ
ଠିକେ ଅରକ୍ଷିତ କୃଷ୍ଣ ଭଜଇ ତୁମ୍ଭଙ୍କୁ ।୧୨।

ଡରୁଥାଉଁ ଆମ୍ଭେ ତୁମ୍ଭେ ଗଲେ ବୃନ୍ଦାବନ
ଡେରଥାଉଁ ଶ୍ରବଣ ନ ଶୁଣି ବେଣୁସ୍ୱନ
ଦୀନବନ୍ଧୁ ହେ !
ଡକା ଡ କରୁଛ
ଡାଳରେ ବସାଇ ମୂଳ କାଟୁଛ କାହିଁକି । ୧୩ ।

ଢାଳି ଥାଅ ଚୂଳ ଗୋଷ୍ଠ ଚଢ଼ା ସଲଖକୁ
ଢାଳ ଗୃହିଁବାର ଭାବେ କଣିଛ ଅମ୍ଭଙ୍କୁ
ଦୀନବନ୍ଧୁ ହେ !
ଢାଳ ଗୃହିଁବାର
ଢାଳେ ଫୁଟି ରହିଅଛୁ ଚରଣେ ଅମ୍ଭର । ୧୪ ।

ଅଶେଷ ମହିମା ତୁମ୍ଭ ତୁମ୍ଭେ ଯିବା ଜାଣ
ଅଣେ ଲୋହୁ ପୁତନାର ଶୋଷିଲ ପରାଣ
ଦୀନବନ୍ଧୁ ହେ !
ଅଣଶୋକ ନୋହୁ
ଅନ୍ତର ଲେଉଟି ପଛେ ଗୋପପୁରୁ ଯାଉ । ୧୫ ।

ତିଲୋଚନ-ଶମ୍ଭୁ-ଶର ଦହଇ ଅମ୍ଭଙ୍କୁ
ତୁମ୍ଭେ ହେଲେ କରୁଅଛ ମଧୁଭୁବନକୁ
ଦୀନବନ୍ଧୁ ହେ !
ତନୁ ଏ ତୁମ୍ଭର
ତାହି କର ତୁମ୍ଭେ ବାରେ ଯଶୋଦା କୁମର । ୧୬ ।

ଥିବିର ନୋହିବ ମନ ଦେଲେହେଁ ଅଦୃଷ୍ଟ
ଥିମ୍ଭେ ଥିଓ ନ କରଇ ହୋଉଛି ବଣାସ

ଦୀନବନ୍ଧୁ ହେ !
ଥିର ନୋହେ ମନ
ଥିର ପାଶେ ବାନ୍ଧନେଲ ଗୋପୀଙ୍କ ଜୀବନ । ୧୭ ।
ଦିନକୁ ଦିନ ଦୁର୍ଲ୍ଲଭ ତୁମ୍ଭ ଦରଶନ
ଦେହ ଯାକ ଝର୍ପା ଥମ୍ଭ ନୋହୁଲା ଲୋଚନ
ଦୀନବନ୍ଧୁ ହେ !
ଦେଖନ୍ତୁ ତୁମ୍ଭଙ୍କୁ
ଦେଖି ଦେଖି ଅଭାବ ତ କରୁଛ ଆମ୍ଭଙ୍କୁ । ୧୮ ।
ଧରଣ ଚଳୁକ କରେ ଦେଇଣ ଚୁମ୍ବନ
ଧୀରେଣ କବରୀ ବାନ୍ଧ କର ଆଲିଙ୍ଗନ
ଦୀନବନ୍ଧୁ ହେ !
ଧରଅଛୁଁ ତାହା
ଧ୍ରୁବ କର ବୋଲୁଛ ଗୋପୀଙ୍କି ଆମ୍ଭେ ସାହା ।୧୯।
ନୟନରେ ଦେଖି ଦେଖି କର ଭନ୍ନ ଭନ୍ନ
ନୁହଇ ସ୍ୱାର୍ଥ ନଷ୍ଟେ ସ୍ୱଜନ ବଚନ
ଦୀନବନ୍ଧୁ ହେ !
ନୀର ଧର କରେ
ନୟମ ଯେ କରଅଛ ଯମୁନାର ତୀରେ । ୨୦ ।
ପାଶ ପ୍ରେମେତ ନୟମନ୍ତ ସହ୍ୟେ ମଥୁରା
ପିଇଲୁ ନୀର ସଙ୍ଗତେ ବୋଲଣ ମନ୍ତ୍ରସ୍ୱ
ଦୀନବନ୍ଧୁ ହେ !
ପୀରତ ଏମନ୍ତ
ପୋଡ଼ି ଏ ସ୍ତ୍ରୀଙ୍କି ଫସାବେ ଝର୍ପା ହେଲୁଁ ଜାତ ।୨୧।

ଫାଉ ପାଶ ଲଗାଇଣ ହୋଇଲୁ ଫରୁଣା
ଫାଟୁ ଯାଉଅଛି ହୃଦ ଦେଖି ଅକରୁଣା
ଦୀନବନ୍ଧୁ ହେ !
ଫମ ବୋଦ୍ଧେ ମନ
ଫେଡ଼ି କର ନ କନ୍ଧ ତ ନ ଯିବା ବଚନ । ୨୨ ।

ବଣମ୍ବର ଦାମୋଦର ବୋଲୁଛ ବଚନ
ବିମ୍ବାଧରୀ ଗୋପନାରୀ ଅଟ ମୋ ଜୀବନ
ଦୀନବନ୍ଧୁ ହେ !
ବୋଲ କି ବିଅର୍ଥ
ବୋଇଲେ ଅକ୍ରୂର ରଥ ବାହୁନେଉ ପଥ । ୨୩ ।

ଭାବ ପ୍ରୀତିରସେ ତୁମ୍ଭେ ଆମ୍ଭଙ୍କୁ କିଣିଲ
ଭାଇ ବନ୍ଧୁ ଜାତି ପତି ସବୁ ଛଡ଼ାଇଲ
ଦୀନବନ୍ଧୁ ହେ !
ଭାବ ପୂରିଅଛି
ତେଜେ କୃଷ୍ଣ ଅରକ୍ଷିତ ନ ପାରୁଁ ମରୁଛି । ୨୪ ।

ମଥୁରାଯାତ୍ରା ଦେଖିବୁଁ ମାମୁଙ୍କର ଆଗ୍ୟାଂ
ମହାରାଜା କଂସ ବୋଲି କେ କରୁ ଅବଗ୍ୟାଂ
ଗୋପୀମାନେ ଗୋ !
ମନସ୍ଥିରେ ଥିବ
ମଥୁରା ଯାଇଁ ଅଇଲେ ଆମ୍ଭଙ୍କୁ ଦେଖିବ । ୨୫ ।

ଯୁବତୀରତନ ଯେ ଯେ ମଧୁପୁର ବାଳୀ
ଜୀବ ପରମକୁ ଯୋଗ କରୁଥାନ୍ତୁ କେଳି ।

ଦୀନବନ୍ଧୁ ହେ !
ଯୋଗରେ ରହିଲେ
ଜଣାଇଲେ ଅମ୍ଭ କଥା ନ ଶୁଣିବ ଭଲେ । ୨୭ ।
ରସିକ ସେ ରସକୁ ରସନ୍ତି ପ୍ରାଣସଖି
ରଖିବ କି ବ୍ୟାଧ ଧରି ଉଡ଼ନ୍ତା ପକ୍ଷୀକି
ଗୋପୀମାନେ ଗୋ !
ରସାଇଛି ମନ
ଲୀନ ହବା ତୁମ୍ଭ କଥା ଅମ୍ଭଙ୍କୁ କୀର୍ତ୍ତନ । ୨୮ ।
ଲକ୍ଷ୍ୟ କରିଥିବାଯାକ ନୟନରେ ଥିବ
ଲକ୍ଷ୍ୟ ତୁଟିଗଲେ ଭାବ ଅଦୃଶ ହୋଇବ
ଗୋପୀମାନେ ଗୋ !
ଲେଖିଥିବ ହିନ
ଲେଉଟି ତ ବାରେକ କରିବ ଦରଶନ । ୨୯ ।
ବାସ ଥିଲା ପୁଷ୍ପକୁ ସେ ଭ୍ରମର ଭ୍ରମଇ
ବାସ ନେଇ ପୁଷ୍ପକୁ ଲେଉଟି ନ ଅସଇ
ଦୀନବନ୍ଧୁ ହେ !
ବୁଝିବ ସେଠାରେ
ବନ୍ଦୀ କରି ରଖିଥିବେ କଟାକ୍ଷ-ଯୁଗରେ । ୩୦ ।
ଶଶ-ଲାଞ୍ଛନ ଭାଜିବ ଦେଖି ତୋ ଶ୍ରୀମୁଖ
ସେ ସ୍ତ୍ରିରୀ ପାଇବେ ପଦ୍ମପାଦ-ପ୍ରୀତି-ସୁଖ
ଦୀନବନ୍ଧୁ ହେ !
ସେ ସୁଖ ଲଭିଲେ
ଚିବନ୍ତି ତରଳ ପ୍ରାଣ୍ୟେ ଜଡ଼ିଥିବ ଗଳେ । ୩୧ ।

ଶୁଣ ପ୍ରିୟେ ପ୍ରାଣସଖି ପ୍ରାଣର ରମଣି
ଶତ୍ରୁହସ୍ତେ ଗତାଗତ ଯେସନେ ସାରେଣୀ
ଗୋପିମାନେ ଗୋ !
ସାକ୍ଷୀ ମାତ୍ର କର
ସେହିମତ ସବୁ କଥା ହୃଦରେ ବିଚାର । ୩୧ ।
ଶ୍ରୀଯ୍ୟାପତି ମଥୁରା ନାରୀଙ୍କ ପତି ହେଲ
ଧୃଷ୍ଟ କରି କୁବ୍ଜାଙ୍କୁ ଆମ୍ଭଙ୍କୁ ଛାଡ଼ିଲ
ଦୀନବନ୍ଧୁ ହେ !
ସରଳା ସମ୍ପତ୍ତି
ସୁଖ ଏଡ଼ି ଠାବ କରି ରଖିଲ ବିପତ୍ତି । ୩୨ ।
ହରଣ ନୟନା ଗୋପାଙ୍ଗନାମାନେ ଶୁଣ
ହେଲେହେଁ ମଥୁରା ତୁମ୍ଭଠାରେ ଥିବ ପ୍ରାଣ
ଗୋପୀମାନେ ଗୋ !
ହୃଦୟ ଆମ୍ଭର
ହରାଇଲେ ତୁମ୍ଭଠାରୁ ନୋହିଛି ବାହାର । ୩୩ ।
କ୍ଷମା-ଜଳ-ନିଧି ଗୋପୀ କରାଇ ପ୍ରସନ୍ନ
ଛଳନେ ଅକ୍ରୂର ସଙ୍ଗେ ମଥୁରା ଗମନ
ଗୋପୀନାଥ ହେ !
କ୍ଷୋଭ ଛାଡ଼ ମନ
କ୍ଷୁଦ୍ର ମତି କୃଷ୍ଣ ଅରକ୍ଷିତ ପାଦେ ଧ୍ୟାନ । ୩୪ ।



# ଗୋପଜୀବନ ଚଉତିଶା

ଗୋପଜୀବନ ଚଉତିଶା ଅତି ପ୍ରାଚୀନ । ପାଠକ ପାଠିବା କ୍ଷଣାତ୍ ମଧ୍ୟ ତାହାର ବୁଝିପାରିବେ । ପୂର୍ବରେ ଶ୍ରୀ ବୃନ୍ଦାବନ ଠାକୁରଙ୍କ ଉତ୍ସବାଦିରେ କୀର୍ତ୍ତନୀ ଦଳକୁ ଗୋପଜୀବନ ଚଉତିଶା ବୋଲିବାକୁ ଗାଇବାର ନିର୍ଦ୍ଦେଶ ଅଛି । ଏହି କୃଷ୍ଣ-ଚରିତ ବର୍ଣ୍ଣନ କାଳ କେତେକାଳ ଅଗରୁ କେତେ ପ୍ରକାରରେ ଯେ କୃଷ୍ଣ-ଗାଥାକୁ ଭକ୍ତମାନେ ବ୍ୟକ୍ତ କରି ଆସିଛନ୍ତି ତାହାର ଏକ ପ୍ରମାଣ ... ସଂଖ୍ୟାବହୁଳ ଏହି ପ୍ରାଚୀନ ଚଉତିଶାମାନଙ୍କରୁ ବେଶ୍ ମିଳେ ।

କନକ ସୁନ୍ଦର ରଥ — ମଧ୍ୟେ ବସେ ଗୋପୀନାଥ
ଗୋପୀମାନେ ଦେଖିଲେ ଚାହିଁ ।
କଂସଦୂତ ସଙ୍ଗତେ — କାମପାଳଙ୍କ ଅବରେ
କରିବ ମଥୁରା କଟକାଇ
ହେ ଗୋପଜୀବନ !
କାହା ଭୁଲେ କଲ ଏ ଭଣ୍ଡର
ଛକେ ଯେତେ ବେଗେ ହୋଇଲ ବାହାର ହେ ।
କହେ କୃଷ୍ଣ ମଧୁରସ — କୋମଳ କର ପରଶ
ଶୁଣ ତୁମ୍ଭେ କୁରଙ୍ଗଲୋଚନା !
ଯ କାର୍ଯ୍ୟେ ମଥୁରା ଯିବୁ — ଯ ଲାଗେ ଗୋପ ଛାଡ଼ିବୁ
କହ୍ନୁ ଦପଣ୍ଡିତ ବହୁ ପୁଣି
ଗୋ ଗୋପୀମାନେ !
କାଲି ଗୋପେ ଅକ୍ରୂର ଅଇଲା
କଂସ ଆଜ୍ଞା ବୋଲି ନନ୍ଦକୁ କହିଲା । ୧ ।

ଖଳଲୋକଙ୍କର ବୋଲ　　କେବେହେଁ ନୁହଇ ଭଲ
ଖ୍ୟାନ୍ତି ଅମୃତ ବୋଲି ବିଷ
ଖେଳ କଉତୁକ ରସ　　ଗୋପପୁରେ ଯିସ ଯିସ
ମଥୁରାରେ କରିବ ତା' ବଶ
ହେ ଗୋପଜୀବନ !
କ୍ଷଣେ ନ ଦେଖିଲେ ତୋ ଶ୍ରୀମୁଖ
କ୍ଷମ ପ୍ରତିମା ପ୍ରାଃପ୍ରେକ ମଣ ସର୍ବ ସୁଖ ହେ ।
ଖେଦ କଲୁ ତୁମ୍ଭ ତହିଁ　　ଖଣ୍ଟିଲୁ ନିମଗ୍ନ ହୋଇ
କ୍ଷଣେ ମନ୍ ନ ପାରୁ ପାସୋରି
ଖେଳିଲେ ଖାଇଲେ ମନେ　　କ୍ଷୁଦ୍ର ବଛା ରଖି ବନେ
କ୍ଷଣେ କ୍ଷଣେ ଚରେ ତୁମ୍ଭ ଧରି
ଗୋ ଗୋପୀମାନେ !
ଖଳ ଲୋକ ପାରୁଣେ ନ ଥାଉ
ଖେଳେ ଅନ୍ଧଙ୍କୁ ଲୋଚନ ଦାନ ଦେଉ ଗୋ । ୬ ।

ଗିରିଛତ୍ର ବାମେ ଧରି　　ରକ୍ଷିଲ ଗୋପର ଶିକ୍ଷ
ଗର୍ଜ୍ଜ ସୁରପତି ଗର୍ବ ହାରି
ଗାଢ଼ ଅପମାନ ପାଇ　　ଅଛି ସେ ଅମରସାଇଁ
ଗାଢ଼େ ସେ ଧ୍ୱଂସିବ ଗୋପପୁରୀ
ହେ ଗୋପଜୀବନ !
ଗାଢ଼ପଣ ସଚଳ ଅମ୍ବର
ଗାଢ଼େ ନୟନ ବହଇ ଅଶ୍ରୁଧାର ହେ ।

ପା-୬—୭ ଗାଢ଼ପଣ ସବଳ ଅମ୍ବର । ଗାଢ଼େ ନନ୍ଦଙ୍କୁ ବହୁଛି ଜାଇଧାର ।

ଗୋପୀକାଙ୍କ ବୋଲ ଶୁଣି ଗିରଧର କହେ ବାଣୀ
ଗତ କଥା ଇନ୍ଦ୍ର ପାସୋରବ
ଗ୍ୟାଂନ ଙ୍କ ନାହିଁ ତାହାର ଗଲେ ସେ ମଥୁରା ପୁର
ଲେଉଟି ସେ ଗୋପ ଧ୍ୱଂସିବ
ଗୋ ଗୋପୀମାନେ !
ଗାଢ଼ କ୍ରୋଧ କିପାଇଁ କରୁଛ
ଗୋପ ନ ରଖିଲେ ନୋହୁ ନନ୍ଦବଛ ଗୋ । ୩ ।

ଘର ବାହାର ଅନ୍ଧାର ଦଶିଲା ଗୋପ ନଗର
ଚନ୍ଦ୍ରବିନୁ ଯାମିନୀ ଯେସନ
ଘୂଞ୍ଚିଲା ସୁଖ ବିସ୍ତର ଘୋଟିଲା ଦୁଖ ସାଗର
ପଲକେ ବିଚ୍ଛେଦ ଖେଦମନ
ହେ ଗୋପଜୀବନ !
ଘାଟ କଲ ଯେତେ ସୁଖ ଦେଲ
ଘାଟଙ୍କ ବିସ୍ତର ପ୍ରେମ ଆରମ୍ଭିଲ ହେ ।
ଘେନ ପ୍ରୀତି କହେ ହରି ଶୁଣ ଗୋ ବ୍ରଜସୁନ୍ଦରୀ !
ଘଟେ ଅନ୍ତର ତ କିଛି ନାହିଁ
ଘଟାଇଛି ଧାତା ହାକ ଘୋଟିଛି ଅକ୍ରୂର ଦେଖ
ଘେନି ଯିବ ରାଜା ଅଜ୍ଞା ପାଇ
ଗୋ ଗୋପୀମାନେ !
ଘେନାଇ କହବୁ ଗୋପ ପରି
ଘଟ ନ ପଡ଼ୁ କଷ୍ଟେ ଥିବ ରହ ଗୋ । ୪ ।

ନ ମଣିଲୁ ବେନ କୁଳ    ଦେଖି ତୋ ମୁଖକମଳ
ମଟ୍ଟଜୀବ ପ୍ରାୟେ ବନ୍ଦୀ ହେଲୁ
ଝଶିଦବା ଝରନ୍ତର    ତୋ ରୂପ ଥାଇ ନଜର
ତୋହ୍ନ ବିନୁ ଅନ୍ୟ ନ ଭାବିଲୁ
ହେ ଗୋପଜୀବନ !
ଝରାଶ ଶ କଟିବ ଆମ୍ଭଙ୍କୁ
ନେବ ନ ଗଲେଣ ପ୍ରେଥି କେ ତୁମ୍ଭଙ୍କୁ ହେ !
ଝାରାଶ ନ କରୁ ଅମ୍ଭେ    ନ ଜାଣନ୍ତି ଗୋପେ ତୁମ୍ଭେ
ଝାଝାଙ୍ଗେଳ ଏହୁ ଗୋପପୁର
ଝାଡକାଂକ୍ଷାୟେ ଗୋପୀ    ଧଇଲୁ ମଦନ କୋପି
ନ ଧଇଲେ କେ ଥାନ୍ତା ଗୋପର
ଚୋ ଗୋପୀମାନେ !
ଝଅଁ ଗଲା ପୁଅଙ୍କୁ ରଖିଲୁ
ଝାଝାଦୁଃଖ ଗୋପେ ପାଇଣ ରହିଲୁ ଗୋ । ୫ ।
ଝର ଯେତେ କଂସଗଣ    ବଢଗଲେ ପୁଣ ପୁଣି
ଝେଚରୂପ ସମସ୍ତେ ଅଇଲେ

---

ନର୍ମଳ ଚନ୍ଦ୍ରବଦନ    ବ ଦେଖି ମନ ଦେଷ୍ଠ
ବଚନେ ତା ନ ହୁଅଇ କହୁ
ନତ୍ରା ହୃଦଭ ପୋତରେ    ତୋ ରୂପ ଥୋଇ ହୃଦରେ
ଭୂଦେଭ ଗୃଢକ ପ୍ରାୟେ ହୋଇ
ହେ ଗୋପଜୀବନ !
ନରାଶ କ କଟିବ ଆମ୍ଭଙ୍କୁ
ନେବ ନ ଗଲେ କେ ଏଥି ବା ତୁମ୍ଭଙ୍କୁ ହେ । ୪ । (ଖ)

୫-୨—୨ ନେବ ଜବ ଯିବ କେତେବେଳେ । କାହ୍ନୁ ରଖିବାକୁ ଏ ମହାଜନରେ ହେ (ଖ)

ଚତୁର ଜାଣି ତାହାନ୍ତୁ          ଚତ୍ରେ ଜାଣି କଲ ହତ

ପ୍ରାଣ ଦେଇ ଜଣେହେଁ ନ ଗଲେ

ହେ ଗୋପଜୀବନ !

ଚତୁର କି ତୁମ୍ଭଙ୍କୁ ଅକ୍ରୂର

ଚତୁ କେମନ୍ତେ ସେ ହରନ୍ତି ତୁମ୍ଭର ହେ ।

ଚତ୍ରେ ଚତୋଇଣ ଥିବ          ଚରଣ୍ଟି ହୋଇଣ ଥିବ

ଚପଲ ହୋଇବ ଚନ୍ଦ୍ରା ଛଡ଼ି

ଶୁର ସଙ୍ଗେ ମଧୁବନ          ମନ୍ତ୍ରିଙ୍କ କର ଗମନ

ଚନ୍ଦ୍ର ଦେଖି କଂସର ନଗରୀ

ଗୋ ଗୋପୀମାନେ !

ଚତୁ ଶୁଦ୍ଧ ସଫଲ କୁମର

ଚନ୍ଦ୍ର ଭୁଞ୍ଜିବ ଶ୍ରେୟକଳ୍ପ ସେ ଅମୃତ ଗୋ । ୬ ।

ଛଡ଼ାଇ ଗୋପ ମୃହାଁସ          ପଣାଇ ମଥୁରା ଦେଶ

ଲେଖ ବଢ଼ାଇଛ ସ୍ନେହେ କରି

ଛଡ଼ି ମାତା ପିତା କୁଳ          ସୁହୃଦ ବନ୍ଧୁ ସକଳ

ବାହାର ହୋଇଛ ମଧୁପୁରୀ

ହେ ଗୋପଜୀବନ !

ଛାଡ଼ିଲେ ତ ଅମ୍ଭେ ନ ଛାଡ଼ିବୁ

ଛଡ଼ିଗଲେ ଅଗ ପଛେ ଗୋଡ଼ାଇବୁ ହେ ।

୬-୩—ଚତୁର ମଣି (ଗ) ୬-୪—ଗୋଷ୍ଠାଏ ନ ଗଲେ (ଖ) ୬-୬—ଚତୁର ଏ ଭୁମ୍ଭଠି (ଖ) ୬-୧—ଛଡ଼ାଇ ଗୋପ ମୃହାଶ, ମଣାଇ ମଥୁରା ଦେଶ (ଗ) ୬-୨—ବଢ଼ାଇବ ଏବେ (ଗ) ୬-୩—ଛଡ଼ି ମାତା ବନ୍ଧୁଗଣ ସକଳ ସୋଦରହିଁ ଜନ (ଗ) ୬-୪—ହୋଇଲ ଅଗ୍ରସର (ଗ) ୬-୬—ଟେକ ଅହୁଁ (ଖ)

ଛନ୍ଦ-ଶିରୋମଣି ଶୁଣି ଛଳଛଳେ ନର୍ମଳ ବାଣୀ
କ୍ଷମାଶୀଳ-ହୃଦୟ କହନ୍ତି
କ୍ଷର ଯେସନେ ନଦୀଜଳ ଛଳଛଳେ ହିନ୍ଦୁରେ ମେଳ
ଛଡ଼ି କି ସେ ବାରଣ ଶୁଣନ୍ତି
ଗୋ ଗୋପୀମାନେ !
ଛାଡ଼ିବୁ କେମନ୍ତେ ତାତ ମାତ
ଯମେ ଦେଖିଣ ଅସିବୁ ଧନ୍ୟ ଯାତ ଗୋ । ୭ ।

ଯଶୋଦାଙ୍କୁ କି ବୋଲିବା କେମନ୍ତେ ମୂର୍ଚ୍ଛିଲେ ଅବା
ଜନ୍ମ କର ପ୍ରେମେ ଅଭାଗୀ
ଯେ ହୋଇବ ହୋଉ ବୋଲି ନ ଭୁଲାଇ ଦେଲେ ଛାଡ଼ି
ଲୁବ୍ଧମନା ଗୋପୀ ମନଭାଗୀ
ହେ ଗୋପଜୀବନ !
ଜୀବଦାନ ଦେଇଛ ଆମ୍ଭଙ୍କୁ
ଜୀବଗଲେହେଁ ନ ଛାଡ଼ିବୁ ତୁମ୍ଭଙ୍କୁ ହେ ।

ଜନ୍ମ କର ନନ୍ଦରାଣୀ ଯତନେ ପାଳିଲେ ପୁଣି
ସ୍ନେହା କଲେ ବରଜ-ରାଜନ
ଜୀବ ଥିଲେ ଯାଇନାହିଁ ବ୍ରଜେ ପ୍ରୀତି କଲ ସହୁ
ଯତନେ ତେଜିଲ କୁଳବନ୍ଧି
ଗୋ ଗୋପୀମାନେ !
ଜୀବଗଲେ ନ ଛାଡ଼େ ସ୍ନେହ ଭାବ
ଯୁଗ ଜଗତେ ସ୍ନେହ ଭାବ ଅସମ୍ଭବ ଗୋ । ୮ ।

ଝାଡ଼ ଅଗ୍ନି ପାନ କରୁ ଜୀବନ ଦେଲୁ ସବୁରି
ଝଲସି ହୃଦରେ ସେ ଚରିତ
ଝଲସି ଲୋହ ଯେସନ ପରଶ ଲାଗି ସୁବର୍ଣ୍ଣ
ତୁମ୍ଭ ଦରଶନ ସେହ୍ନମତ
ହେ ଗୋପଜୀବନ !
ଝିମିଝେହେଁ ନ ଯାଇ ମନରୁ
ଝାଡ଼ଜୀବନ ଯେସନେ ନଯାଇ ବନରୁ ହେ ।
ନ ଯାଅ ନ ବୋଲ ଗୋପି ! ନୃପ କଂସ ଅଛି କୋପି
ନ ଗଲେ ନାଶ କରିବ ଗୋପ
ନ ଧର ମନେ ଭଞ୍ଜନ ନୟନେ ଦେଖୁ ରାଜନ
ନ ଦେଖିଛୁ କଂସର ସ୍ୱରୂପ
ଗୋ ଗୋପୀମାନେ !
ନ ଅସିବା ପ୍ରାପ୍ତେକ ନ୍ୟମଣି
ନଣି ଦବା ଦୂର—ଭାବନା ହୃଦୟରେ ଗୁଣ ଗୋ ! ୯-୧୦ ।

ଝାଣ ହୋଇଥିଲୁ ଦୃବେ ଜାଣନ୍ତି ସକଳ ଦେବେ
ଝଲସି ସେ ଗରବ ଆମ୍ଭର
ଝାଣ ଅନଙ୍ଗ ହୋଇବ ଝାଣେ ଆମ୍ଭଙ୍କୁ ଦହିବ
ଅପଯଶ ହୋଇବ ତୁମ୍ଭର
ହେ ଗୋପଜୀବନ !
ଝାଣପଣ ସହିଲ୍ସ ଅମ୍ଭର
ଝାଣେ ନୟନ ବହୁଛି ଅଶ୍ରୁଧାର ହେ ।

୯-୩—ଝଲସେ ପରଶେ ଲୋହ। ଯେସନେ ସୁବର୍ଣ୍ଣ ହୁଅ (ଖ) ୯-୬—୨ ନେବ ଜୀବ ଯିବ ଯେତେବେଳେ । ନାହିଁ ଭେଟିବାକୁ ଏ ମହୀମଣ୍ଡଳେ ହେ ।

ଝମାଲ ଝଙ୍କାଏ ନାହିଁ ଝାଙ୍କ ମନେ ଧର ସହି !
ଝମାଲ ଝଙ୍କାଇ ମାର ମଲ୍ଲ

ଞମାଲ ଞଲ୍ଲୁଛି ଅଙ୍ଗ ଞମାଲ ମନ ଅନଙ୍ଗ
ଞାକଇ ଞାକନାଞା ନ ଦେଲ୍ଲ (?)
ଗୋ ଗୋପୀମାନେ !
ଞୀକା ମୋର ଗୁଣ ଘୋଷୁଥିବ
ଞେଙ୍କ ଧରିଛୁ ହୃଦରେ ତୁମ୍ଭ ଭାବ ଗୋ । ୧୧ ।

ଠାଳୁଅ ହୋଇ ନିର୍ଦ୍ଦୟା ଶୁଣିଲୁକ ନାହିଁ ସେହା
ଠାବ କଲୁ ଅମ୍ଭେ ସେତେବେଳେ
ଠିକେ ପୂତନାରି ପ୍ରାଣ ଖାଇଲ ବିନା ଦୋଷେଣ
କାଳୀଙ୍କ ଦଳିଲ କାଳିନ୍ଦୀରେ
ହେ ଗୋପଜୀବନ !
ଠାବ କଲୁ ତୁମ୍ଭର ଚରିତ
ଠିକେ ଗନ୍ଧ ବୋଲି ବୋଲୁନ୍ତି ସମସ୍ତ ହେ ।

ଠାକୁର ପ୍ରମାଣ ଅଟ୍ଟ ଠିକେ ଦେଖନ୍ତୁ ଅମ୍ଭଙ୍କୁ
ଠିକ ଭାବେ ଠକିଲ ଅମ୍ଭଙ୍କୁ
ଠିକେ ଗୋପାଳ-ତନୟ ଠାଠିକେ ପ୍ରାଣ ହୃଦୟ
ଠେଲେ ହୋଇଲୁ ଠାକୁଙ୍କ ଜୀବନଙ୍କୁ
ଗୋ ଗୋପୀମାନେ !
ଠିକେ ଛଟକେ କରୁଅଛି କୋହ
ଠିକେ ହୁଇ ଗୃହ ହୋଇ ତୁମ୍ଭେ ବନ୍ଧ ଗୋ । ୧୨ ।

ତକାଂକର ଦେଲ ସୁଖ          ବିକଚ କମଳ ମୁଖ
ଦନ୍ତୁଛି ବିଚ୍ଛେଦ ଅଗ୍ନି ଅନ୍ତେ
ଥୋଲେ ମୁଖ ଥାଳ ଗୃହୁଁ          ଅହେ ସ୍ୱାମି ! ବୋଲି କହୁଁ
ଯେତେଡ଼େ ଭାବ ମୂର୍ଚ୍ଛିବ କେମନ୍ତେ
ହେ ଗୋପଜୀବନ !

ଥାଳ ଧେନୁ ଗୋଧନ ବାଛୁଡ଼ା
ତଙ୍କ ଖାଉ କଂସ କଲା କଥା ଛେଡ଼ା ହେ ।
ଥେଇଁ ରଥୁଁ ବନମାଳୀ          ଗୋପୀଙ୍କ ସନ୍ନିଧେ ମିଳ
ଥାଇ ଯେତେକେ ଅରକେ କହନ୍ତି
ତକାଇଲା କଂସରାଣ          ଧନୁ ଉଚ୍ଛବ କରଣ
ଥୋଲେ ଦେଖି ଆସିବୁ ଚଡ଼ାଉ
ଗୋ ଗୋପୀମାନେ !

ତେଜାଇ କି ଯାଉବୁ ତୁମ୍ଭଙ୍କୁ
ଥୋଲେ ତୁମ୍ଭ ବିନୁ ନ ଦେଖୁ ଆନଙ୍କୁ ଗୋ । ୧୭ ।
ଥମ କହୁନାହୁଁ ଅମ୍ଭେ          ଥାଲେ ନ ଆସିବ ତୁମ୍ଭେ
ଥଳଥଳ ଦଶୁଛି ଯେତେ କଥା
ଥଳଦଳ ପଦ୍ମଅକ୍ଷି          ଥାଳ ଗୃହୁଁ ହୋଉ ସୁଖୀ
ଥାଲେ ସୁଖ ଖଣ୍ଡୁଛି ବିଧାତା
ହେ ଗୋପଜୀବନ !

ଥମ କଥା ଅସିବ ବୋଲୁଛି
ଥାଲେ ତ ଧରଛି ମଥୁରାପୁର ପଥ ହେ ।

୧୦-୩—ଥୋଲେ ପୂର୍ଣ୍ଣ ହୁଅ ଦେଖ, ଅହେ ଶ୍ୟାମ ବାହୁ ଖାଲୁ ।

ତାଲେ ମୂରୁଛ ତୁମ୍ଭଙ୍କ          ଯିବୁ ମଥୁରା ପୁରକୁ
ପିତା ମାତା ସୁହୃଦଜନଙ୍କୁ
ତାଲେ ଚନ୍ଦ୍ର ଅସ୍ତ ହୋଇ          ପୁଣ କି ଉଦେ ନୁହଇ
ପାସୋରେ କି କୁମୁଦ ବନକୁ
ଗୋ ଗୋପୀମାନେ !
ତାଲେହେଁ ତ ମୂରୁଛବୁ ନାହିଁ
ତାଲେ ତୁମ୍ଭେ ନ ଛଡ଼ିଲେ ଯିବୁ କାହିଁ ଗୋ । ୧୪ ।

ଅଣଅପରାଧୀ ଗୋପୀ          ଅଛ ବଡ଼ ମହାପାପୀ
ଅଣହେଲା ତୁମ୍ଭେ ତ କରୁଛ
ଅଛ ବଳଅଇଲୁଣି          ଅପାରହିଁ ବୋଇଲୁଣି
ଅବଧି ଯିବାରେ କଣ୍ଟଛ
ହେ ଗୋପଜୀବନ !
ଅଣି ବହୁ ବିପରୀତ କର୍ମ
ଅତ ପ୍ରୀତ ସେ ଥମ୍ଭର ଛଡ଼ାଇଲ ହେ ।
ଅଣିମାଦ ଅଇଶର୍ଯ୍ୟ          ଲଭଲେହେଁ ଯତ୍ନ ଓଜ
ହୋଇବ କି ଆନ ଯେ ଭୁବନ
ଅଣି କର ଯାତା ବାଛୁ          ସକଳ ଗୁଣ ଥୋଇଛୁ
ଗୋପାଳ ଯେ ଗୋପୀ ବୃନ୍ଦାବନ
ଗୋ ଗୋପୀମାନେ !
ଅଣହେଲା କେମନ୍ତେ କରବୁ
.ଅହନଣି ତୁମ୍ଭ ଭାବ ଭାବୁଥିବୁ ଗୋ । ୧୫ ।

ତୁମ୍ଭର ମହିମା ଯେତେ ତୁଣ୍ଡରେ କହିବୁ କେତେ
ତୁଳ୍ୟ ପୁଣ ନାହିଁ ଯେ ଆମ୍ଭର
ତୃପ୍ତି ମନ ହୋଇବ ତୁମ୍ଭରେ କଂସ ମରିବ
ତୀଡି ରହିବ ତିନିପୁର
ହେ ଗୋପଜୀବନ !
ତଥ୍ୟ ବାଣୀ ଏ ଅମୃତ ହୋଉ
ତୁମ୍ଭ ଦେଖନ୍ତେ କଂସକୁ କାଳ ନେଉ ।
ତୁମ୍ଭ ବିନୁ ଆମ୍ଭ ମନ ଦୁଃଅଇ ଅବା ଯେସନ
ବଚନେ ତା ନୁହଇ ନା କହି
ତିଳେକ କୋଟିଏ ଯୁଗ ପ୍ରାପ୍ତେ ମଣୁ ସୁଖ ଭୋଗ
ତୃଷିତ ଚାତକ ପ୍ରାପ୍ତେ ହୋଇ
ଗୋ ଗୋପୀମାନେ !
ତହିଁର ମଦନ ଏକା ସାକ୍ଷୀ
ତାକୁ ଆନ ନ ପାରଇ ଦୁଃଖ ଦେଖି ଗୋ । ୧୬ ।

ଥିବ ସବୁଦିନେ ତୁମ୍ଭେ ଥପ୍ରେ ଜାଣିଥିଲୁ ଅମ୍ଭେ
ଥିଲେ ଭେଳା ଭଳିଲି ଅମ୍ଭର
ଥିବୁ ବୋଲି ଜାଣିଥିଲୁ ଥାଇ ଧନ ହରାଇଲୁ
ଥିଲ ଅବେଭାର ନ୍ୟେ ତୁମ୍ଭର
ହେ ଗୋପଜୀବନ !
ଥାପିତ ରହିବ ସ୍ନେହ ଜୀର୍ଣ୍ଣ

୧୬-୧—ତୁମ୍ଭେ ତା (ଗ) ୧୬-୨—ତେତେ ପୂଣ୍ୟ (ଖ) ୧୬-୫—ତଥ୍ୟ ଏ ଅମୃ
ବଚନ ହେଉ (ଙ) ୧୭-୧—ଥିବ କଥା ସବୁଦିନେ, ଗୋପ ତେଜି ମଥୁରେ (ଗ)
୧୭-୪—ଅତଏବ ହୋଇବ ତୁମ୍ଭର ହେ (ଛ)

ଥାଉ ଥାଉ କୃଷ୍ଣ ନାଟିଲେ ଗୋପୀଙ୍କି ହେ ।
ଥୋଇ ତୁମ୍ଭ ଚିହ୍ନ ମନ          ଥିବୁ ଆସିବୁ ବହନ
ଥିର ଜଳେ ମୀନ ଚହରଇ
ଥାବର ଥାଉ ନିକଟେ          ଅକାଶେ କି ଫୁଲ ଫୁଟେ
ତେସନ ଯେ ଅମ୍ଭେ ତୁମ୍ଭ ଚହିଁ

ଗୋ ଗୋପୀମାନେ !
ଥିବା ବୋଲି ମନେ ମଣିଥିବ
ଥିର ନୋହିଲେ କି ଅମ୍ଭଙ୍କୁ ପାଇବ ଗୋ ।। ୧୭ ।

ଦୟାନିଧି ବୋଲ ଶୁଣି          ବୋଲନ୍ତି ଗୋପ-ତରୁଣୀ
ଦେଖିବାରୁ ଶୁଣିମା ଅନ୍ତର
ଦରହାସ ମୁଖେ ଶୋଭା          କପ ଗୃହିଁବା କହିବା
ଦେଖି ଶୁଣିଥିଲୁ ନିରନ୍ତରେ

ହେ ଗୋପଜୀବନ !
ଦେଇଥିବ ଆଶା ଅସେବାନ୍ତୁ
ଦେହ ଧଇଲୁ ଏ ଦୁଃଖ ସହିବାକୁ ହେ ।

ଦାମୋଦର ଭାବଗ୍ରାହୀ          ବୋଲନ୍ତି ଗୋପୀଙ୍କି ଚାହିଁ
ଦୁଃଖୀ ନୁହ ଦୃଢ଼ କର ଚିତ୍ତ
ଦେଖିଥିଲ ଦୂର କଥା          ଦୃଢ଼ ମନେ କର ଚିନ୍ତା
ଦୂର ଭାବ ନିକଟେ ପ୍ରାପତ

ଗୋ ଗୋପୀମାନେ !
ଦମ୍ଭପଣ କିପାଇଁ ଛାଡ଼ୁଛ
ଦମ୍ଭେ ନ ଛାଡ଼ ତୁମ୍ଭର ଭାବପକ୍ଷ ଗୋ । ୧୮ ।

ଧୈର୍ଯ୍ୟ ବିଚ୍ଛେଦ ବନ    ଅନଙ୍ଗ ଦହଇ ପ୍ରାଣ
ହରିଣୀ ବିପତ୍ତି ପଡ଼ିଅଛି
ଧନ୍ୟ ସେ ବ୍ରାହ୍ମଣ ନାରୀ    ଦର୍ଶନେ ଯାହା ତୁଛାରି
ସେହି କଥା ମନରେ ପଡ଼ୁଛି
ହେ ଗୋପଜୀବନ !
ଧାଡ଼ା ନ ସହିଲୁ ଅମ୍ଭ ଠାଏଁ
ଧଇଥିବୁ ଦେହ ତୁମ୍ଭ ଯିବା ଯାଏଁ ହୋ
ଧନ୍ୟ ତୁମ୍ଭେ ଗୋପୀ ଯେତେ    ଧୀରେ ମନ ଦେଲ ମୋତେ
ଧ୍ୱଂସି କ୍ରୋଧ ଲୋଭ ମୋହ ଫାଶ
ଧ୍ୱନି ଶୁଣିଣ ଶ୍ରବଣେ    ଧାଇଁ ସର୍ବ ଗୋପୀଜନେ
ଧୀର ଭାବେ ରଚିଲ ମୃହାଁସ ଗୋ
ଗୋପୀମାନେ
ଧୈର୍ଯ୍ୟ ଧରି ସଦନେ ଥିବ
ଧୀର ହୋଇଥିଲେ ଅର୍ଥକୁ ପାଇବ ଗୋ ।୧୯।
ନୋହିଲେ ତ ଗୋପୀନାଥ    ଗୋପ କରିଣ ଅନାଥ
ଯେତେ ବେଗେ ହୋଇଲ ବାହାର
ନ ସହିଇ କଂସତ୍ରାଣ    ନଷ୍ଟେ ଜାଣ ତ ଆପଣ
ଜାଣି ଜାଣି ବିଷ କଲେ କେ ଆହାର
ହେ ଗୋପଜୀବନ !
ନିରନ୍ତରେ ଭାବୁ ସେ କଥାକୁ
ନେଉଅଛୁ ଧାଡ଼ା କହିବୁ କାହାକୁ ହେ !

୧୯-୧—୨ ଧୈର୍ଯ୍ୟ ବନ ଅନଙ୍ଗ ବିଚ୍ଛେଦ ଦହୁଛି ପ୍ରାଣ, ହରିଣୀଙ୍କ ଅବସ୍ଥା ହେଉଛି (ଶ) ୨୦-୧—ଶୀଘ୍ର ବୋଧ ହେ'ଉଲ ବାହାର (ଶ)

ନ କର ଶୋଚନା ଗୋଇ ! ନ ଭୁଲ ଗୋ ଅମ୍ଭ ପାଇଁ
ନ କର ସ୍ୱଭାବ ଭୁଲେ ଦ୍ୱନ୍ଦ୍ୱ
ନାଶ କଲୁ ଗୃହ ଗଣ ଷଣ୍ଢ ବକା ଅର୍ଘା ଚଣ
କୃଷ୍ଣ ଦେଖି ରଖିଥିଲେ ଦ୍ୱନ୍ଦ୍ୱ
ଗୋ ଗୋପୀମାନେ !
ନାହିଁ ଭୟ ଭ୍ରାନ୍ତ ଏ କଥାକୁ
କଷ୍ଟେ ଅପ୍ରଚେ କରୁଛ ଅସିବାକୁ ଗୋ । ୨୦ ।

ପଶିଲେ ମଥୁରାପୁରେ ଗୋପୀ ଦୁଃଖ ଥିବୁ ମନରେ
ଚତୁର୍ଭୁଜଙ୍କ ବଚନ ଶୁଣିଲେ
ପ୍ରତ୍ୟକ୍ଷେ ମଣିଲୁ ଯାହା ଠାକୁରେ କହିଲେ ତାହା
ପଛେ ପ୍ରଚେ ଯିବ ତ ରହିଲେ
ହେ ଗୋପଜୀବନ !
ପରଚେ ନ ଯାଇ ମନକୁ
ପୁଣି ପାଲଟି କି ଅଧିବ ଗୋପକୁ ହେ
ପଦ୍ମଚପାବନ ଭଲେ ପଦ୍ମମୁଖେ ହସି ବୋଲେ
ଶୁଣ ତୁମ୍ଭେ ପଙ୍କଜଲୋଚନ !
ପାଳଲ ଗୋପରେ ଥିଲୁ ପରମ ସୁଖ ଲଭିଲୁ
ପାଇଥିଲୁ ଯଶୋଦା ଜନନୀ
ଗୋ ଗୋପୀମାନେ !
ପଶୁଁ ଥରେ ମଥୁରା ନଗରେ
ପଛ ସୁଖ ଲଭ ତୁମ୍ଭେ ଥିବ ଗୋପପୁରେ ଗୋ । ୨୧ ।

ଫଳ ପାଚଲେ କି ପୁଣ ପାଲଟି ହୋଇବ ତରୁଣ
ଫଳଲା ଅମ୍ଭ କରମ ଫଳ

ଯାଇ କେତେହେଁ କହିବା    ଯରୁଣୀମାନ ସହିଲ
ଶୋକ ଘନ ବରଷେ ପ୍ରବଳ—
ହେ ଗୋପଜୀବନ !
ଯାଇ କସ କହିବୁ ତୁମକୁ
ଯାଇ ସୁଖ ଦେଇ ଦହିଲ ଅମ୍ଭକୁ ହେ
ଯରୁଣୀ ହୃଅ ମୃଗାକ୍ଷି !    ଯାଇ ଚନ୍ଦ୍ରା ଖଡ଼ ପକ୍ଷି !
ଯୋଯୋଡ଼ାଇ ହୁତାଶନ ଦେଇ
ଯୁରବ ସୁଧା-ଅଧର    ଯାଇ ହସ ରସ ଭାବ
ଯାଇ ସୁଧା ମୁଖରେ ସେ ହୋଇ
ଗୋ ଗୋପୀମାନେ !
ଯୁଟିବ ହୃଦୟରେ ଚନ୍ଦ୍ରା କଲେ
ଯଲ ନାହିଁ ଟି ଧଇର୍ଯ୍ୟ ନ ଭଜଲେ ଗୋ ।୧୧।

ବଡ଼ ଭରସା ତ ଦେଲ    ବଡ଼ ବେଗେ ଛଣ୍ଡାଇଲ
ବଡ଼ ଶୋକ-ଜଳେ ତ ଭରିଲ
ବଜ୍ରରୁ ସେ କଠିନତା    ଅମ୍ଭ ହୃଦ କଲ ଧାତା
ଜାଣି ଏଡ଼େ ଦାରୁଣ ହୋଇଲ
ହେ ଗୋପଜୀବନ !
ବୋଲୁ ବୋଲୁ ବେଳ ଖସୁଅଛୁ
ବଡ଼ ଶୋକ-ଜଳ ହୃଦରେ ପୂରଛୁ ହେ ।

୧୧-୨—୨ ଯାଇ କସ କହିବୁଁ ତୁମ୍ଭକୁ । ଯାଇ ଧନ ଦେଇ ବଞ୍ଚିଛ ଅମ୍ଭକୁ ହେ (ଖ) ୧୨-୧—୧ବଡ଼ ଅଶାରକୁ ଅମ୍ଭ ବଡ଼ ବେଗେ ଛିଣ୍ଡାଇଲ କପଟ ହିନ୍ଦୁରେ ମେଢ ଦେଲ (ଚ) ୧୨-୩—ବଜ୍ରହୁଁ ଅଧିକ ଅମ୍ଭ ହୃଦୟ ଗଢିଲ ଧାତା (ଟ) ୧୨-୨—୨ ବଡ ଅଭାଗିଣି ଗୋପନାରୀ, କଷ ପଇଷି ଯାଉଛ ଗୋପପୁର (ଖ)

ବରଜ ପୁଚ୍ଛିଅ ମୋହେ ମନ୍ଦହାସେ ବଢ଼ି କହେ
ବରଜବନିତା ବାଣୀ ଶୁଣି
ବହୁତ ସେ ବେଳୁବେଳ କରୁଛ ଶୋକ ପ୍ରବଳ
ବିସ୍ମରିଲେ ତୁମ୍ଭର ଏ ଜ୍ଞାନ
ଗୋ ଗୋପୀମାନେ !
ବିବେକୀ ଅଟର ବୋଲ ଶୁଣ
ବେଳୁବେଳ ଯେ ଉଚ୍ଛନ୍ନ କଲ ମନ ଗୋ ।। ୧୩ ।

ଭାବଗ୍ରାହୀ ବୋଲି ଅମ୍ଭେ ଭରସାରେ ଭଜ ତୁମ୍ଭେ
ଛାଡ଼ିଲୁ କୁଳର ଲୋକମାନ
ଭ୍ରମିଲୁ ଯେସନେ ମୃଗୀ ମୃଗତୃଷ୍ଣା ଜଳ ଦେଖି
ଆମ୍ଭ ଆଶା ହୋଇଲା ତେସନ
ହେ ଗୋପଜୀବନ ।
ଭଲ ଲୋକେ ନ ବୋଲିବେ ଭଲ
ଭାବ ଦେଇ ଏଡ଼େ ଅଭାବ ତ କଲ ହେ ।
ଭାବେ କହୁଅଛୁ ଅମ୍ଭେ ଭ୍ରାନ୍ତ ନ କର ତୁମ୍ଭେ
ଭାବରେ ଭଜିଲ ଗୋପୀଜନେ

ଭାବଗ୍ରାହୀ ଅମ୍ଭେ ଅଟୁ ଭାବରେ ତୁମ୍ଭଙ୍କୁ ଖଟୁ
ଭଜିଥିବ କାଳନ୍ଦୀ ପଡ଼ାରେ
ଗୋ ଗୋପୀମାନେ !
ଭାବେ ବାନ୍ଧି ଅମ୍ଭେ ଗ୍ରହ କଲୁ
ଭାବେ ବୃନ୍ଦାବନେ ଘଟହିଁ ଥାପିଲୁ ଗୋ ।। ୧୪ ।

ମଧୁପ ଯେ ମକରନ୍ଦ— ମଧୁପାନେ ହୋଇ ବନ୍ଦ
ମନରେ ତା' ନୋହେ ଅନ୍ୟ ଫୁଲ
ମନୋହର ଯେତେ କେଳି କଲ ଆମ୍ଭ ସଙ୍ଗେ ମିଳି
ଏବେ ମନ ମଥୁରାକୁ ଦେଲ
ହେ ଗୋପଜୀବନ !
ମଣିଲୁ ତୁମ୍ଭର ସ୍ୱଭାବର
ମାୟା ହୃଦେ ପୂରି ଶ୍ରୀମୁଖ ମଧୁର ହେ ।
ମନୋହର ମୁଖେ ମନ୍ଦ ହସି କହନ୍ତି ଗୋବିନ୍ଦ
ମାୟା କେବେ ତୁମ୍ଭଙ୍କୁ କରିବୁଁ
ମୋହର ପ୍ରୀତି ନିମନ୍ତେ ମାତା ପିତାଦି ସମସ୍ତେ
ମନ ମଜାଇଲ ତେଜି ସବୁ
ଗୋ ଗୋପୀମାନେ !
ମଧୁପ କୁସୁମ ଚୁମ୍ବି ଗନ୍ଧ
ମଧୁରସଭାବ ଅନ୍ତରେ ଧେନନ୍ତି ଗୋ । ୧୫ ।

ଯିବ ଯେବେ ଯାଅ ବନା ଯେମନ୍ତେ ଜାଣିଥିବ ଜନା
ଜୀଇବୁ ନାହିଁ ନା ତୁମ୍ଭ ଗଲେ
ଯେତେ ବିପତ୍ତି ପଡ଼ିଲା କେହି ଯେମନ୍ତେ ନ ବାଧିଲା
ଜୀବ ଥିବ କି ତା ସୁମରିଲେ
ହେ ଗୋପଜୀବନ !
ଜାଣ ଯାହା କହୁଅଛୁ ଆମ୍ଭେ
ଜାଣି ମାୟା କରୁଅଛ ତୁମ୍ଭେ ହେ ।

୧୨—୧।୪ ରସ ବନ୍ଧୁ ଭଣିକି କି ରସେ + + + + ବୃନ୍ଦାବନ ବିବାଣେ (?)

ଯାହା କହୁଅଛ ସଖି ! ଜାଣଛ ସର୍ବ ମୃଗାକ୍ଷି
ଯାଅ ବୋଲି ବୋଇଲେ ସେ ଯିବ
ଜୀବନ ପାଲଟ ହୁଅ ଯେତେବେ ଭାବେ ହେଲା ପ୍ରୀତ
ଜଗତରେ କଥା ରୁହାଇବ
ଗୋ ଗୋପୀମାନେ !
ଜାଣିଲେ ଜଗତ ଜନେ ଯେହ୍ନା
ଯହୁଁ ଥିଲେ କୃଷ୍ଣ ଗୋପୀଙ୍କର ସ୍ନେହା ଗୋ । ୨୭ ।

ରସିକ ଙ୍କ ମନ ତହିଁ ରସ ଶେଷ ହୋଏ ଯହିଁ
ରସ ବିନୁ ରସିକ ଙ୍କ କରେ
ରସେ କି ଚକୋର ପକ୍ଷୀ ନଶିବନୁ ଶଶୀ ଦେଖି
କୁମୁଦନୀ ବିକାଶ ପ୍ରଖରେ
ହେ ଗୋପଜୀବନ !
ତବ ପ୍ରାୟେ ଅକ୍ରୂର ଅଇଲା
ରସହିନ୍ଦୁ ଶୋଷି ନୀରସ ସେ କଲା ହେ ।
ରାଜୀବ ଲୋଚନ ହେନ୍ଦେ ରଙ୍ଗେ ହସି ବଚନେ ଗୁହିଁ
ରମଣୀ ଗୋପୀଙ୍କି କହେ ଗୀର
ରସ ନେସ ଅନ୍ତରେ ଦେଇ ରହେ ହୃଦେ ନଶାମଣି
ରମଣୀୟ ଅଟେ କୁମୁଦର
ଗୋ ଗୋପୀମାନେ !
ରବି ସମ ଅକ୍ରୂର ନୃହଇ
ରାଜା କଂସ ବୋଲେ ଆସିଛି ସେ ନେଇ ଗୋ । ୨୭ ।

୨୨—୭ ଇତିହିକ ୯ ଗୋପ ନାରସ ବନ୍ଧୁ (ଖ)

ଦୋଲତଲେ କି ଫୁଙ୍ଗ ପାଇ      ଦୁଃଖ କି ହୋଇଯିବ ଯେଡ଼ାଇ
ଦହୁଅଛୁ ବିଧାତା ଯେମନ୍ତ
ଦମ୍ଭହିଁ ଅଧିକ ଯେତୁ      ପୁରାତନ ଗୁଡ଼ ସେତୁ
ପ୍ରୀତି ପୁରାତନ ସେହିମତ
ହେ ଗୋପଜୀବନ !
ଦିଜ ଚେଷ୍ଟେ କାର୍ଯ୍ୟ ନ ପାଇଲୁ
ଦିବ ଦୋଷେ ମୂଳଧନ ହରାଇଲୁ ହେ ।
ଦଳିତ ବାଣୀ ସରସ      କହନ୍ତି ସେ ପୀତବାସ
ଦିଆଁଠ ଲେଙ୍କନ କଥା ସତ
ଦାଗିଲେ ଦୁର୍ଜନ ମେଳ      ଦିନକୁ ଦିନ ଉଜ୍ଜ୍ୱଳ
ଦୁଧସଙ୍ଗ ନିମ ସ୍ୱାଦ ମତ
ଶୋ ଗୋପୀମାନେ !
ଲେଖିଛୁଁ ହୃଦରେ ମଣିଥିବ
ଦପ୍ର ଲଗାଇଲେ ଦାଗ କି ବୁଝିବ ଗୋ । ୧୮ ।

ଧନ୍ଦରୁ ଯେ ପଦ୍ମମୁଖ      ବାଳ କାଳେ ପ୍ରେଡ଼େ ସୁଖ
ବଡ଼ ହେଲେ ବଡ଼ ସୁଖ ଦେବ,
ଧାତା ସେ ନ ସହିଲା      ଘନ ବଜ୍ର ପ୍ରାୟେ କଲା
ଧାଁ କୃଷ୍ଣ କେ ଥାନ କରବ
ହେ ଗୋପଜୀବନ !
ବଡ଼ ଅଭାଗିନୀ ଗୋପନାରୀ
ଧଷ ଲୁଣ୍ଠାଇ ଯାଉଛ ଦୂର କରି ହେ ।

୨୧—୩ ଦହ ଗାତା ନ ମହ୍ରବ (ଖ) ଘନ ବନ୍ଧ୍ୟ ପ୍ରାପ୍ତେ କଲ (ଚ)
୨୧—୨—୨ ବେଲ୍ଲ ବେଲ ବେଳ ସବୁଥିଛ । ବଢ଼ ଶୋକତଳ ହସରେ ସୁଇଛ (ଗ)

ବିରସ ବଚନ ଗୋପୀ    ନ ବିସ୍ମୃତ ଛପାଁ କୋପୀ
ବେଭାର ସ୍ନେହ ନ୍ୟୂନଇ ତୁମ୍ଭର
ବସି ବିସ୍ମୃତ କରିବ    ବୃନ୍ଦାବନ ରାସ ଭାବ
ବଂଶୀ ବଡ଼ ନାରଦସ୍ୱା ଯଉ
ଗୋ ଗୋପୀମାନେ !
ବଢିଣ ବିବେକ ବିସ୍ତରିବ
ବେଲ ଶୁଭାଶୁଭ ପ୍ରୀତି ନ ଛାଡ଼ିବ ଗୋ । ୨୯ ।

ଶିରୀଷ କୁସୁମ ଅଙ୍ଗ    ଯୁଡ଼ଲ ଚାହିଁ ଅପାଙ୍ଗ
ଶ୍ରୀମୁଖକୁ ଚାହିଁ ସେ ବୋଲନ୍ତି
ସୁଧାରସ ବାଣୀ ଶୁଣି    ସୁଖୀ ହୋଇ ଗୋପାଙ୍ଗଣୀ
ସୁଲୋଚନ ଦେଖି ହୋଇ ଶାନ୍ତି
ହେ ଗୋପଜୀବନ !
ସରବ କି ଭାବେ ହବା ନାଶି
ସବୁ କି ଭାବେ ଛାଡ଼ିଛୁ ସୁଖରାଶି ହେ ।
ଶ୍ରୀପତି ବୋଲନ୍ତି ବାଣୀ    ଶୁଣ ଗୋ ପ୍ରାଣମିତଣି !
· ଶଶୀଙ୍କ ଅନଳ ବରଷଇ
ସେ ଷଟ୍‌ପଦ କମଳ    ମକରନ୍ଦ ପାନେ ଭୋଳ
ଫଳ ମୂଳ ଡାଳ କି ଗ୍ରାସଇ
ଗୋ ଗୋପୀମାନେ !
ଶଶୀଙ୍କ ନକ୍ଷତ୍ର ଯେସନେ ଶୋଭା
ସମ ତୁମ୍ଭ ଆମ୍ଭ ପ୍ରୀତି ଜସ ଦେବା ଗୋ । ୩୦ ।

ଶୋଭା ପାଉଥିଲା ଗୋପ     ସୁନ୍ଦର ବରଜ ରୂପ
ଦେଖି ସୁଖୀ ହୋଇବ କେ ଅବା
ଶରଧା ବଳିଲା ଦେଖି     ସେ ବେଳୁ ସର୍ବ ଉପେକ୍ଷି
ଏବେ ଦେଖୁ ମଥୁରାକୁ ଯିବ
ହେ ଗୋପଜୀବନ !
ସୁଖ ଛଡ଼ାଇଣ ଦେଲ ଦୁଃଖ
ସୁଧା ଭାବେ ଦେଖୁଥିଲ ଯେ ଶ୍ରୀମୁଖ ହେ ।
ସାରଣିରେ ଚକ୍ଷୁ ଛନ୍ଦ     କରେ ଧରି ଦେଇ ଫିଙ୍ଗି
(ସେ) କର କ୍ରନ୍ଦ ଅନେକ ଆସଇ
ସାଗରେ ବୋଇତ ମେଲି     କରି ବଶ ହେବ ବୋଲି
ତହିଁ ଆଜ ଅନ୍ତେ ନ ଜାଣଇ
ଗୋ ଗୋପୀମାନେ !
ସନ୍ଦେହଟି ନ କର ମନକୁ
ସ୍ନେହ ଧନ ଦେଇ କିଣିଛ ଆମ୍ଭଙ୍କୁ ଗୋ । ୩୧ ।

ଶୁଣୁଛ ସକଳ କଥା     ସୁହୃଦେ ନ ଦେଇ ବ୍ୟଥା
ଶିଶୁକାଳେ ସେବାରେ ଅଇଲୁ
ଶୁଭାଶୁଭେ ବହୁ କରି     ସବୁଠାରେ ଏହୁ କଥା
ସୁଖଫଳ ପାଇ ହରାଇଲୁ
ହେ ଗୋପଜୀବନ !
ଯତ କହ ଅପେବ କ ବାରେ
ଶୁଣି ଶାନ୍ତ ଅଟେ ଭକ୍ତକୁ ମନରେ ହେ

୩୧ । ୧ ନାଟେନ୍ଦ୍ର ସୁନ୍ଦର ରୂପ (ତ)

ସଙ୍ଗେ ଯିବେ ଗୋପଜନେ    ଗୋପାଳ ତନୟମାନେ
ତାତ ମାତ ଯିବେ ଅମ୍ଭ ସଙ୍ଗେ
ଯାତ୍ରା ଧନୁଯାତ୍ରା ଶେଷ    ମନୋରଥ କର ତୋଷ
ଲେଉଟି ଆସିବୁ ଯାଇଁ ବେଗେ
ଗୋ ଗୋପୀମାନେ !
ସମସ୍ତେ ହରଷେ ବୋଲ ଯାଅ
ଶୀଘ୍ରେ ଯାଇ ଆସ ଯଶ ଗୁଣ ଗାଅ ଗୋ । ୩୨ ।

ହୋଉ ବୋଲି ନ ବୋଇଲେ    ହସ୍ତ କପୋଳେ ମାଇଲେ
ହରିଣ ନୟନୁ ଲୁହ ପୋଛି
ହୋଇବ ଯେ ହୋଉ ଅଛି    ତା ବିନୁ ସେ ନାହିଁ ବଞ୍ଚି
ଯାତା ଘଟି ଭଣି ଅଛୁ ବାଞ୍ଛି
ହେ ଗୋପଜୀବନ !
ହୋଉ ଶୁଭେ ଔରଘନ ନାଶ
ହୋଉ ଅମ୍ଭ ମାନଚନ୍ଦ୍ର ପରକାଶ ହେ
ହରଷ ହୋଇଣ ହରି    ହାକନ୍ତି ବ୍ରଜସୁନ୍ଦରୀ
ହୋଇ ଏକ ଆରକେ ପୀରତି
ହୃଦରେ ପୂରିବ ଥିବ    ହରଷେ ହଳ ବଞ୍ଚିବ
ହୋଇ ସଙ୍ଗ କରିବ ପୀରତି
ଗୋ ଗୋପୀମାନେ !
ହୁଏ ଅମ୍ଭ ମାଳା ତୁମ୍ଭେମାନେ
ହୋଉ ଆଜ୍ଞା ଯାଅ ଯା ସଦନେ ଗୋ । ୩୩ ।

୩୩ । ୧ ହେଉ ବୋଲି ଶଶୀମୁଖୀ    ସନମତ କଲେ ଦେଖି ନୟନୁ ନେତ୍ରଜ ଧାର
ପୋଛି (୨)

ସୁଶ୍ରୀଳ ବନ୍ଧ ନାଗର ଅଶେଷ ଗୁଣ-ସାଗର
କପଟିଙ୍କୁ କୁଅଳ କଢାଇ
ଯନ୍ମାଶୀଳ ପ୍ରଭୁ ହେନ୍ତୁ ସୁଦେବ୍ର ନନ୍ଦସୁତ ସ୍ନେହୁ
ଯମେ ହଲଧର ସାନ ଭାଇ
ହେ ସାଧୁଜନେ !
ଷମା ମାଗେ ଦୀନ ଯେ ଶ୍ରୀକର
ହିଷ୍ଠ ଅଧରୁ କର ତାକୁ ପାର ହେ ।
ଛନ୍ଦ-ଶିରୋମଣି ଛନ୍ଦ ଛଛନେ ଗୋପୀଙ୍କି ବନ୍ଦ
ଯମ ଅନୁରୂପେ ଦେଖାଇଲେ
ଛଛନେ ରଥେ ବସିଲେ ମଥୁରାକୁ ବିଜେ କଲେ
ଯମେ ପୁରେ ପ୍ରବେଶ ସେ ହେଲେ
ସେ ଗୋପଜୀବନ ।
ଷମା କର ମୋହୋର ଯେ ଦୋଷ
ଯମେ କହିଲଇଁ ଗୋପଲୀଳା ରସ ସେ । ୩୦ ।



୩୪—୧ । ୧୪ ଛନ୍ଦେ ଅନୁରାଗ ବଢାଇଲେ ।

---

ଛନ୍ଦେ ରଥେ ବସିଲେ ମଥୁରାକୁ ବିଜେ କଲେ
ଷୁମତ ବୃନ୍ଦ ସବେ ବୋଲେ
ହେ ଗୋପ ଜୀବନ
ଷମ୍ୟ ଯାଞ୍ଚ ହେତେ ପାପ ମୋର
ଛନ୍ଦେ ବନ୍ଧନେ କଲ ତ ଏ କଣ୍ଠ ହେ (୮)

# କୋଳାହଳ ଚଉତିଶା

---

ମଥୁରାକୁ କୃଷ୍ଣଚନ୍ଦ୍ରଯାତ୍ରା ଦିନ ଗୋପରେ ଯେଉଁ କୋଳାହଳ ଉଠିଥିଲା ତାହା ଏହି ଚଉତିଶାରେ ବର୍ଣ୍ଣିତ ହୋଇଥିବାରୁ ଏହାର ନାମ କୋଳାହଳ ଚଉତିଶା ହୋଇଅଛି । କୋଳାହଳ ଚଉତିଶାର ଜନପ୍ରିୟତା ଯଥେଷ୍ଟ । ଏହାର ମଧୁର ପଦାବଳୀରେ ଶୋକର ଯେଉଁ କରୁଣ ମୂର୍ଚ୍ଛନା ଉଠିଅଛି ତାହାହିଁ ଏହି ଜନପ୍ରିୟତାର ଭିତ୍ତି । ଯେଉଁ କବିତାରେ ମାନବ ଜୀବନର ଉନ୍ନତତମ ଶୋକର ଅବତାରଣା ତାହାହିଁ ମାନବ ଜାତିର ମଧୁରତମ କବିତା ।

କରୁଣା ସାଗର　　　　କମ୍ବୁ-ଚକ୍ରଧର
କର ଧର ରାଧା କହେ ବାଣୀ
କରୁଣାନିଧାନ !　　　　ମୋହ ପ୍ରାଣଧନ !
କିପାଇଁ ଯାଉଛ ଛାଡ଼ି ପୁଣି
କଞ୍ଜନୟନ ହେ !
କରୁଥିବ ମନେ ପ୍ରତିଅକ୍ଷ
ଅଗ୍ରା ଦଙ୍ଗାଇ ନିରକ୍ଷ କରିଗଲେ ଜଗତେ ଅର୍ଜିବ କେଉଁ ଯଶ ।୧।

ଖେଦ ରାଧାବାଣୀ　　　　ଶୁଣି କମ୍ବୁପାଣି
ଖେଦଭର ହୋଇ କହେ ବାଣୀ
ଖଳ କଂସାସୁର　　　　ପେଷିଛି ଡଗର
ଆସିଛି ଆମ୍ଭଙ୍କୁ ନେବ ପୁଣି
ଖଳନାଶିନି ରେ !
କ୍ଷଣେହେଁ ଅନ୍ତର ନ କରିବୁ
ଖଣ୍ଡିଲା ଦଇବ ତୁମ୍ଭ ଅମ୍ଭ ଭାବ ଗୃହଦିନକୁ ତୁ ଚାହିଁଥିବୁ ।୨।

ଗୋକୁଳ ନନ୍ଦନ !                ଗିରିଧର ଘନ-
ଶ୍ୟାମ ! ଜନାର୍ଦ୍ଦନ ! ଦଇତ୍ୟାରି !
ଗୋପୀଙ୍କ ଜୀବନ !                ମଦନ ମୋହନ !
ଗଲେ କି ଆସିବ ଗୋପପୁରୀ
ଗୋପୀବଲ୍ଲଭ ହେ !
ଗଲ୍ପ ଜଣା ତୁମ୍ଭ ପ୍ରୀତିପଣ
ଗଲା କାଟିଦେଇ ଅକ୍ରୂର ଅମ୍ଭର ନେଇଯାଉଅଛି ପଞ୍ଚପ୍ରାଣ । ୩ ।

ଘନଜଘନ !                ମନ୍ତ୍ରସିଦ୍ଧବଚନ !
ଘେନ ମୋ ବିନତି ପ୍ରାଣସହି !
ଘଡ଼ିଏ ଅନ୍ତର                ହେଲେ ଯୁଗାନ୍ତର
ଘୋଷି ଘୋଷି ହିନ ସରୁନାହିଁ
ଘନବସନ ରେ !
ଘଡ଼ି ରହିଅଛି ତୋର ଚହିଁ
ଘେନକି ନାହିଁ ମନରେ ଗୁରୁଦୁଃଖ ସହିରେ ଆସିବୁଁ କେନ ଭାଇ ।୪।

ନନ୍ଦ ଏଡ଼େ ମନ୍ଦ                ନ ଜାଣନ୍ତି ଛନ୍ଦ
ମନ୍ଦରବିନ୍ଦ ଗୋ ପ୍ରତେ ଗଲେ
ନବୀନସୁନ୍ଦର                ଶ୍ୟାମକଳେବର
ଯଶୋଦା କେମନ୍ତେ ମୂରୁଛିଲେ
ନନ୍ଦନନ୍ଦନ ହେ !
ନଷ୍ଟପ୍ରୀ ଯାଉଛ ଛାଡ଼ିକରି
ନିର୍ଲ୍ଲଜ ଅମ୍ଭା ଏ ନ ଯାଇ ରହିଛି ପଶ୍ଚାତେ ମରିବୁ ଝୁରି ଝୁରି ।୫।

ଚତୁର୍ଭୁଜଚନ !                ମୋହ ପ୍ରାଣଧନ !
ଚନ୍ଦ୍ରବଦନକୁ ଗୋ ଥିବୁ ଚାହିଁ

ଚତ୍ତକୁ ସୁମନ  କର ପ୍ରାଣଧନ !
ଚନ୍ଦ୍ର କୁମୁଦରେ ଭେଦ ନାହିଁ
ଚନ୍ଦ୍ରବଦନ ଗୋ !
ଚକ୍ଷୁର ପିତୁଳୀ ତୁହି ମୋର
ଚମ୍ପା ବରନ ! ରାଜହଂସଗମନ ! ମେଲାଣି ତୁ ମୋତେ ବେଗେ କର ॥

ଛଡ଼ଣ ପଡ଼ି  ସହୋଦର ସମ୍ପତ୍ତି
ପ୍ରୀତି-ଗୁଣନିଧି ଥିଲୁଁ ପାଇ
ଛଣକ ଛଟରେ  ସକଳ ହରାଇ
ଛୋଭରେ ମରୁଛୁଁ ଗୋପଗୋଇ
ଛମାସାଗର ହେ !
ଛାର ଏ ଜୀବନେ କାର୍ଯ୍ୟ ନାହିଁ
ଛାଡ଼ିଯିବ ବୋଲି ଯେବେ ମନେ ଥିଲା ଛଡ଼ାଇଲ କୁଳ କାହିଁପାଇଁ ॥

ଜାଣିନା ସୁନ୍ଦରୀ  ଯେସନ ଦୈତ୍ୟ ମାତ
ଗୋପରେ ରଖିଲ ଗୋପକୁଳ
ଜଳନ୍ତା ଅନଳ  ଗର୍ଭେ ଠାବ ଦେଲ
ଜିଣିଲ ସ୍ୱର୍ଗରେ ଆଖଣ୍ଡଳ
ଜଗତମୋହନ ଗୋ !
ଜନ୍ମୁ ଜନ୍ମୁ ହେଲା ପରମାଦ
ଜଗତ ମଧ୍ୟରେ ଯେତେକ ଦନୁଜ ସକଳ କରିବ ମୁହିଁ ବଧ । ୮ ।

ଝାଡ଼ବନେ ପଶି  ଅହେ ବ୍ରହ୍ମଋଷି !
ଜାଣି ହବା ଯେନ ବୁଲୁଥିଲୁଁ
ଝାଡ଼ଫୁଲ ଡାଳ  ଗୁନ୍ଥି ବନମାଳ
ହାର କରି ଗଳେ ଲମ୍ବାଇଲୁଁ

ଝାଡ଼ି ବିନୋଦ ହେ !
ଝୁରିବାକୁ କଷ୍ଟେ କରିଗଲ
ଝଂପକେତନ ଶରେ ଅମ୍ଭ ଜୀବନ ନେବାକୁ ହୋଉଛ ତତପର ।୯।

ନବ ନିତମ୍ବିନି ! ଦେନ ମୋର ବାଣୀ
ନ ଭାଳରେ ସଖି ! ମନେ ଆନ
ନୀରଜନୟନ ! ନବଯୌବନି !
ନୀରକ୍ଷ ଜନ ଜଣାଣ ହେନ
ନୀଳବସନ ହେ !
ନାଶିଣ ବଚନ ଛାଡ଼ି ଲୋକ
ନଷ୍ଟପ୍ର କର କହୁଛ ପ୍ରାଣସହି ! ତୁ ମୋତେ ନେମାଣି ବେଗେ କର ।୧୦।

ଟେକିଥିଲୁଁ ବଜ୍ର କର ଅନ୍ତର୍ଗତେ
ଟେକି ଠୋପରେ ପକାଇ ଦେଲ
ଟାଣପଣ ଯେତେ ଥିଲା ଅମ୍ଭ ଚିତ୍ତେ
ମୁହୂର୍ତ୍ତ ମାତ୍ରକେ ଚୂର୍ଣ୍ଣି କଲ
ଟାଣ ଭାଙ୍ଗିଲ ହେ !
ଟଙ୍କଧର-ବପୁ-ହସ୍ତେ ଦେଇ
ଟାଳଦେଇ ଗୋପୀମାନଙ୍କୁ ଯାଉଛ ଆଉ କି ଆସିବ ବେନି ଭାଇ ।୧୧।

ଠାବ କଲ କେତେ କେତେ ଚନ୍ଦ୍ରାନନ !
ରାଧାକୃଷ୍ଣ ଏହି ଦୁଇ ନାମ
ଠାବେ ଶୁଭୁ ଅଛି ଶବଦରେ
ଅଭେଦ ପୀରତି ଦୁଇ ଜଣ
ଠଣ ସୁନ୍ଦର ଗୋ !

ଠାବ କଲେ ହର ସର୍ବଠାରେ
ଠିକେ ମାରକଣ୍ଡ ହ୍ରଦରେ ଧାଇଲେ ଠାବ ଦେଲୁଁ ତାଙ୍କୁ ହୃଦୟରେ ।୧୨।

ଡାକୁଥାଇ ବଂଶୀ- ସ୍ୱନ ନିରନ୍ତରେ
ଯେ ବେନି ଶ୍ରବଣ ଡେରିଥାଇ
ତର ଭୟ ଲଜ୍ଜା ସବୁ ଦୂର କରି
ବଶ ସର୍ବଦିନ ହୋଇଥାଇ
ଡକ୍ଷ-ନାଶନ ହେ !
ଡକା ଆମ୍ଭଙ୍କୁ ତ କରୁଅଛ
ଡଙ୍କା ବାଜୁଅଛି ଜଗତ ମଧ୍ୟରେ ରାଧା ପ୍ରାଣବନ୍ଧୁ ଶିଖିବସ୍ତ୍ର ।୧୩।

ଢମ କଲ୍ଲ ଢାଲୀ ଦେଲ ପାଦେ ଦଳି
ଢାଳିଲ୍ଲ ବିଷ ପୀୟୂଷ କଲ୍ଲ
ଢାଲେ ବେଦପଢ ବସ୍ତ୍ର ହରିନେଲ୍ଲ
ବସ୍ତ୍ର ବାଳକଙ୍କୁ ଜାତ କଲ୍ଲ
ଢମ-ନାଶିନ ରେ !
ଢମ୍ଭ କହୁନାହିଁ ମୁହିଁ ତୋତେ
ଢଳଢଳ ପଦ୍ମ ନୟନରୁ ନୀର ଖସି ପଡ଼ୁଅଛି ହୃଦଗତେ ।୧୪।

ଅହେ ଦୀନବନ୍ଧୁ ! ଅହେ କୃପାସିନ୍ଧୁ !
ତପ କରିଥିଲୁଁ ତୁମ୍ଭପାଇଁ
ଅନେକ ଭରସା ଥିଲ୍ଲ ପ୍ରତିଆଶା
ନୀରସ ହୋଇଲୁ ଗୋପଗୋଷ୍ଠ
ଅହେ ପଦ୍ମମୁଖ !
ଆଉ କି ଆସିବ ଗୋପପୁର
ଅଭାଗ୍ୟ କର୍ମରୁ ଦଇବ ବଳରୁ ଆସି ଘୋଟିଲ୍ଲ ବିପଦ ଘୋର ।୧୫।

ତରୁଣୀରତନ ! ମୋହର ପ୍ରାଣଧନ
କହିବାକୁ ମୋତେ ବଳ ନାହିଁ
ତୁମ୍ଭେ ଯେ ସୁଜାଣ ତରୁଣୀରତନ
ଛଳେହେଁ ବଳମ୍ବ ନ ସହଇ
ତନୁଉଦର ଗୋ !
ତିଭୁବନେ ଯାର ତେଜଗୁଣ
ତୁହି ଯେ ସୁଜାଣ ତରୁଣୀ ରତନ କୋପ କରବନ୍ତି କଂସରାଣ ।୧୭।

ଥିଲ ଗୋପପୁରେ ଗୋପାଳ ସଙ୍ଗରେ
ଗୋପୀଙ୍କ ଜୀବନ ହୋଇଥିଲ
ଥିଲୁ ସେବାକରି ହେ ବନବିହାରୀ !
ସ୍ଥିରମନକୁ ଅସ୍ଥିର କଲ
ସ୍ଥାନ ଛାଡ଼ିଲ ହେ !
ଥିଲା ଯେତେ ଆଶା ଆମ୍ଭ ମନ
ସ୍ଥଳନଥିଲେ ଏବେ ଆମ୍ଭ ଦୃଷ୍ଟିଁ ଗଲ ଅଉ ଏ ଜୀବନେ କି କାରଣ।୧୭।

ଦାରିଦ୍ର୍ୟଭଞ୍ଜନ ! ଦୁଃଖ ବିନାଶିନ !
କରିଅଛୁ ପ୍ରିୟ ଭାବ ଯେତେ
ଦଇବ ଅବଳ ହେବାରୁ ବିଫଳ
କର୍ମ ଅବଲ ସମ୍ଭବ କେତେ
ଦୁଃଖନାଶିନ ରେ !
ଦିନୁ ଦିନୁ ହେଲା ପରମାଦ
ଦଇତର ସଙ୍ଗେ ଦ୍ୱନ୍ଦ୍ୱ ଆରମ୍ଭିଛି ପାତିଛି ସେହୁ ଅନେକ ଫାନ୍ଦ ॥

ଧରଣୀମଣ୍ଡନା ଗଜେନ୍ଦ୍ରଗମନା
ବୋଲନ୍ତି ଶୁଣ ହେ ଦଇତ୍ୟାରି !

ଧଇଣ ଅକ୍ରୂର ଜୀବନେ ମାଇବୁ
ନ ରହିବୁ ଅମ୍ଭେ ଗୋପପୁରୀ
ଧନ୍ଦା ସରବ ହେ !
ଧର୍ମହିଁ ଯେବେ ହୋଇବ ସଢ
ଧନ୍ୟ ଯାହା ଦେହ କପଟେ କରଛୁ ନଷ୍ଟେ ନାଶ ଯିବ ଭୋଜନାଥ ॥

ନବଜଳଦମ୍ବିନ ! ନବ ଯଉବନ !
ନବୀନକିଶୋର ! ବ୍ରଜବାଳ !
ନୂପୁର ବେଶର ହୀରାର ହାରର
କପାଇଁ ତାହାକୁ ଦଅ ଗାଳି
ନୀଳବସନ ରେ !
ନାରୀଙ୍କ ବଚନ ଛାଡ଼ ଚୋର
ନିଷ୍ଠୁର କରଣ କହୁଛୁ ରେ ସହୁ ! ମେଲାଣି ଭୁ ମୋତେ ବେଗେ କର ॥

ପଦ୍ମ ଲୋଚନ ବଚନ ଶୁଣି ଗୋପୀ
ମଉନ ହୋଇ ସ୍ତବଧ ହେଲେ
ପରମ-ସାଧବୀ ପଙ୍କଜ-ଲୋଚନଙ୍କୁ
ବକୁଳରେ ଜଳ ବୃଷ୍ଟି କଲେ ।
ପ୍ରାଣବଲ୍ଲଭ ହେ !
ପୀଡିଲା ଯେତେକ ପଞ୍ଚବାଣ
ପୀରତି ଭୁଜଙ୍ଗ ହେବ ବୋଲି କର ପରତେ ନ ଥିଲା ଅମ୍ଭ ମନ ॥

ଫର୍ଦ୍ଦୋଳ ଅକ୍ରୂର ବୋଲଇ ଉତ୍ତର
ବୋଲ ନ କର ହେ ଗୋପାଙ୍ଗଣି !
ଯେଉଁ ମନ ଦୁଃଖ ନ ହୋଇ ବିମୁଖ
ସଙ୍ଗେ ଦିଅ ରାମ କୃଷ୍ଣ ଆଣି

ଫାନେ ପଡ଼ିବ ଗୋ
ଯେତେକ ଗୋପାଳ ଗୋପାଙ୍ଗଣୀ
ଫେଡ଼ି କହୁଅଛୁ ଭେଜ ମହାବୀର ନ ଗଲେ ଅଦିବ ଏହୁଷଣି ।୨୨।

ବ୍ରଜପୁର ବାଳୀ    ଟନେ ମନେ ଭାଳ
ଅକ୍ରୂରଙ୍କୁ କର ଯୋଡ଼ି ଭଣି
ବାଳୁତ କୁମର    ଶ୍ୟାମ କଳେବର
ନ ଜାଣନ୍ତି ଛନ୍ଦ କୂଟ ବାଣୀ
ବଂଶୀ—ବିନୋଦ ହେ !
ବୁଝି ତ ଆମ୍ଭଙ୍କୁ ଦଶୁ ନାହିଁ
ବିନୟ କରଣ କହୁଅଛୁଁ ଅମ୍ଭେ ଛଳେ ଅନ୍ତର କରବ ନାହିଁ ।୨୩।

ଭାଳ ଭାଳ ଗୋପୀ    କୃଷ୍ଣ କର ତୋଳ
ଅକ୍ରୂରଙ୍କୁ ନେଇ ସମର୍ପିଲେ
ଭବଗ୍ରାହୀ କର    ଧଶ ନୀଳାମ୍ବର
ରଥରେ ଯାଇଁ ବିଜୟ କଲେ
ଭଇ ଦୁଇ ଯେନ
ଭାବରେ ଅକ୍ରୂର ଗଲ୍ଲ ପୁଣି
ଭବଗ୍ରାହୀ ଯହୁଁ ଅନ୍ତର ହୋଇଲେ ନର୍ମାଘୀ ହୋଇଲେ ଗୋପାଙ୍ଗଣୀ ।।

ମେଲ ହୋଇ ସୁଢ    ଗୋପାଳ ବହୁତ
ଗୋରସ ଭାର କନ୍ଧରେ ଯେନ
ମାଧବ ମୁରାରି    ବେଣୁ ଧ୍ୱନିକରି
ଗଲେ ଗୃହିଁ ଥିଲେ ଗୋପାଙ୍ଗଣୀ
ମହା ଶୋକଭରେ

ନ ଦେଖିଲେ ଯହୁଁ ରଙ୍ଗବରେ
ମୂର୍ଚ୍ଛା ଯାଇଣ ପଡ଼ିଲେ ଶଶୀମୁଖୀ ଅକ୍ରୁରେ ଡାକଣ ଶ୍ରୀକୃଷ୍ଣରେ ।୨୫।

ଯଶୋଦାନନ୍ଦନ ଜଗତଜୀବନ
ଯମୁନାକୂଳରେ ହେଲେ ଯାଇଁ
ଯୋଡ଼ି ବେନକର ବୋଲଇ ଅକ୍ରୂର
ଏଥିରେ ସ୍ନାନ କରିବ ମୁହିଁ
ଜଗୁ-ସେ·ଦର ଯେ
ଜାଣିପାରି ଅକ୍ରୂରର ମନ
ଜଳସ୍ଥଳରେ ଦର୍ଶନ ଦେଇ କରି ଚେତାଇଲେ ତାଙ୍କୁ ବ୍ରହ୍ମଜ୍ଞାନ ।୨୬

ରଥ ପରେ ବଜେ କର ଜଗନ୍ନାଥ
ମଥୁରାପୁରକୁ ଅବୋରଲେ
ରଙ୍ଗବର ଶୂନ୍ୟ ମାର୍ଗେ ଷେପିଗଲ୍ଲ
ମଧୁବନରେ ପ୍ରବେଶ ହେଲେ
ରାମ କୃଷ୍ଣ ଦେଖି
ମଧୁପୁର ଜନେ ହେଲେ ସୁଖୀ
ରହିଲେ ଗୋପାଳ ଗୋରସ ପହଡେ ରାଜା ମଥୁପୁର ସ୍ଥାନଦେଖି ।୨୭।

ଲାବଣ୍ୟକୁମର ବୋଲନ୍ତି ଉତ୍ତର
ରଥ ଘେନ ତୁମ୍ଭେ ବେଗେ ଯାଅ
ରାମକୃଷ୍ଣ ବେନ ଭାଇ ଅଛନ୍ତି
ଏମନ୍ତ ରାଜାଙ୍କ ଆଗେ କହ
ଆଜ୍ଞା ପାଇ କର
ରଙ୍ଗବର ନେଲ୍ଲ ଅଗକର
ରନ୍ଧନ ଭୋଜନ ମାର୍ଜ୍ଜନା ସାରିଣ ଜଣ୍ଟିନ୍ତେ ରହିଲେ ମଧୁପୁରୀ ।୨୮।

ବଳରାମ କର ଧରି ପୀତାମ୍ବର
ଗୋପାଳମାନଙ୍କ ସଙ୍ଗେ ଘେନି
ବୋଲନ୍ତି କଟକ ଦେଖିବା ଛକ
ଛ ଅଶେ ବସନ୍ତ ନୃପମଣି
ବାଇ ବଂଶୀ ହରି
ନନ୍ଦସୁତ ଆନନ୍ଦେ ମଥୁରା
ଝଟକ ସେ ପୁର ଅଛି ମନୋହର ତା ସମାନ କେହି ନୋହେ ପରା ॥
ଶ୍ରୀହରି ବିଜୟ ଶୁଣି ଲୋକଚୟ
ଦ୍ୱାରେ ପୂର୍ଣ୍ଣକୁମ୍ଭ ବସାଇଲେ
ଶ୍ରୀରାମ କୃଷ୍ଣଙ୍କ ଦର୍ଶନ ନିମନ୍ତେ
ବାଳ ବୃଦ୍ଧ ଯୁବା ଆସି ହେଲେ
ଶୁଭେ ହରଷିନ
ଶ୍ୟାମଜଳଧର ତନୁ ଚାହିଁ
ସ୍ୱର୍ଗେ ଜୟ ଜୟ ଦୁନ୍ଦୁଭି ଶବଦ ମଙ୍ଗଳ ପଢ଼ନ୍ତି ସୁରମୁନି । ୩୦ ।
ଶୁଭିଲା ଶବଦ ହରଷେ ଗୋପ ନାଦ
ରଜକ ମାରିଣ ବସ୍ତ୍ର ନେଲ
ସୁଦାମା ମାଳୀକି ମୋକ୍ଷ କଲ ହରି
କୁବୁଜା ରୂପକୁ ଉଛ କଲ
ଶୁଭେ ଧନୁଘରେ
ହୋଇଲେ ସେ ଧନୁ ବାମକରେ
ସେ ଧନୁ ଭାଙ୍ଗିଣ ପ୍ରଭୁ ଅବକାଶ ପ୍ରବେଶ ହୋଇଲେ ସିଂହଦ୍ୱାରେ ॥
ଶୁଭେ ଗଲା ନିଶି ଅରୁଣ ପ୍ରକାଶି
ନିତ୍ୟକର୍ମ୍ମମାନ ସାରିଲେ

ଶୁଣରେ ଶ୍ରୀଧର ଗୋପବୃନ୍ଦ ଘେନ
ମଥୁରା ପଥରେ ବିଜେ କଲେ
ଶୁଭେ ନନ୍ଦନ
ଶ୍ୟାମଳ ଜଳଦ ତନୁ ଛନ୍ଦି
ସଚରାଚରରେ ଜନମ ହୋଇଣ ନର୍ମଣୀ ହୋଇଲେ ଗୋପାଳୁଣୀ ॥

ହୋଇ ବୀରବେଶ ରମ୍ୟ ପୀତବାସ
ହରିଲେ ଗଜ ମାହୁନ୍ତ ପ୍ରାଣ
ହୋଇଣ ଆନନ୍ଦ ମାରି ମଲ୍ଲବୃନ୍ଦ
ଦେଖୁଛନ୍ତି ତହିଁ ସଭାଜନ
ହର ହର ହୁଇ
କାଳ ବିକାଳର ରୂପ ହୋଇ
ବଧିଲେ ପରାଣ ଭୋଜ ନୃପରାଣ ପଡ଼ିଲା ଜଗତ ତଳେ ଯାଇ ॥୩୩॥

ଯଜ୍ଞ ଦୈତ୍ୟ ମାରି ନନ୍ଦ ଯେ ଉଦ୍ଧାର
ଅମରବୃନ୍ଦ ଉଷତ ହେଲେ
ଘୋଡରୁ ମାତା ପିତାଙ୍କୁ ଉଦ୍ଧାରଣ
ଉଗ୍ରସେନେ ତହିଁ ରାଜା କଲେ
କ୍ଷମାଶୀଳ ହରି
ଛଳେ ଜରାସନ୍ଧ ଦର୍ପ ହରି
ଘର ଦଇବଙ୍କ ବଳସ୍ଥଳ ବୋଲି ଘୋଡରୁ ଉଦ୍ଧର ଦଇତ୍ୟାରି ॥

# ଉଦ୍ଧବ ଚଉତିଶା

---

ପ୍ରେମର ଅନ୍ଧମାନ ବୈଷ୍ଣବ କବି କୃଷ୍ଣଦାସ ଙ୍କର ସରଳ ଭାଷା ପଦାବଳୀରେ ଉଚ୍ଚଭାବପୂର୍ଣ୍ଣ ମୁଦ୍ରାଇଅଛନ୍ତି । ଦୀନକୃଷ୍ଣଙ୍କ ଉଦ୍ଧବ ଚଉତିଶାର ଭାବ ଏ ଚଉତିଶାରେ ନାହିଁ ସତ୍ୟ, ତଥାପି ଭାବର ସାରଲ୍ୟାଦି ଅଭିବ୍ୟକ୍ତି ଏଥିରୁ ଏହାର ସ୍ଥାନ ଖୁବ୍ ଉଚ୍ଚ ।

(ରାଗ ଚକ୍ରା ଦେଶାକ୍ଷ)

କହନ୍ତି ସକଳ ଗୋପୀ ଉଦ୍ଧବକୁ ଚାହିଁ
କେବେହେଁ କୃଷ୍ଣଙ୍କୁ ଆଉ ବିଶ୍ୱାସ ନ ଯାଇ
ଉଦ୍ଧବ ହେ !
କର୍ମ ଆମ୍ଭ ହୀନ
କୃଷ୍ଣ ଅର୍ଥେ କର ଗୋପୀ ବଞ୍ଚୁଥିଲୁଁ ଦିନ । ୧ ।

ଖଟୁଥିଲୁ ଗୋପୀ ଆମ୍ଭେ ଅଙ୍ଗ ସଙ୍ଗ ହୋଇ
କ୍ଷଣକର ସୁଖ ନ ରଖିଲେ ଭାବଗ୍ରାହୀ
ଉଦ୍ଧବ ହେ !
କ୍ଷେତ୍ରଚପୀ ଗୋଇ
ଖଗପତି-ନାଥଙ୍କର ଜନ୍ମେ ଜନ୍ମେ ଦ୍ରୋହୀ । ୨ ।

ଗୋବର୍ଦ୍ଧନ ଗୁଣ ଗୁଣି ଜୀବନ ଥାଇବ
ଗୋପୀନାଥ ନାମ ଆଉ ବହୁଲେ କାହିଁବ ?
ଉଦ୍ଧବ ହେ !
ଗରବ ସରଳା
ଗିରି ଧର ତ୍ୟଜିହଁ ଦନ୍ତ୍ୟ ମଥୁରା ବହୁଳା । ୩ ।

ଢୋଲ୍ ଥାଉଁ କୃଷ୍ଣ-ନାମ ଶୁଣି ଢବା ବସି
ଢାଉଥ ହରଣୀ ପ୍ରାଏ ହେଲୁ ବ୍ରଜବାସୀ
ଉଦ୍ଧବ ହେ !
ଢଠେଣ ମୁରଳି
ଢେନ କ୍ରୀଡ଼ା କରୁଥିବେ ମଥୁରା ଯୁବତୀ । ୪ ।

ନାନାରସେ ରସାଇଲୁଁ ନନ୍ଦ-ନନ୍ଦନଙ୍କୁ
ନାଗରୀଙ୍କ ସଙ୍ଗ ପାଇ ମୂର୍ଚ୍ଛିଲେ ଆମ୍ଭଙ୍କୁ
ଉଦ୍ଧବ ହେ !
ନାରାୟଣ ସ୍ୱାମୀ
ନୋହିଲେ କେମନ୍ତେ ସେ ହୋଇଲେ ଅନ୍ତର୍ଯ୍ୟାମୀ । ୫ ।

ତତପଣେ ପୂତନା ସ୍ତନରେ ବିଷ ଲଇ
ତତ୍ପର୍ବା ହୋଇ କୃଷ୍ଣ କୋଳରେ ବସାଇ
ଉଦ୍ଧବ ହେ !
ତଣ୍ଡାଇଲା ସ୍ତନ
ତନ୍ଦିବା ମାତ୍ରକେ ତାର ଶୋଷିଲେ ପରାଣ । ୬ ।

ଥୋଇଲୁଁ ସକଳ ଲଜ୍ଜା ଭଜିଲୁଁ ତାହାଙ୍କୁ
ଥକାଇ ଗଲେ ମଧୁବାସ କହିବୁ କାହାକୁ
ଉଦ୍ଧବ ହେ !
ଥଳ ନ କରିବା
ଥଳଥିଲ ଶ୍ରୀକୃଷ୍ଣଙ୍କୁ ବିଶ୍ୱାସ ନ ଦିବା । ୭ ।

ଦାଉ ଏ ଜୀବନ ଯେବେ ନଇଲେ ମାଧୋଇ
ଜୀଇଥାଇ କି କରିବୁଁ ଗୋପପୁର-ଗୋଇ ?

ଉଦ୍ଧବ ହେ !
ଯୋଗିନୀ ହୋଇବୁଁ
ଜଗନ୍ନାଥ ନାମ ଧରି ତୀର୍ଥାନ୍ତରେ ଯିବୁ । ୮ ।

ଝାଡ଼େ ଫୁଟି ମାଳତୀ ଲଭନ୍ତି ଯେତେ ଗତି
ଝାଡ଼ବାସୀ ଗୋପୀ ଆମ୍ଭ କର୍ମ ସେହି ମତି
ଉଦ୍ଧବ ହେ !
ଝାସିବୁଁ ଯମୁନା
ଝମଟେକ ରହି ତୁମେ ଦେଖିଯାଅ ବନା । ୯ ।

ଞପ୍ରେମ କରାଇ ଆନ ଦନ କଣ୍ଟକର
ଞଷ୍ଟେ ଆସିବୁ ବୋଲି ବେକ କର ଧର
ଉଦ୍ଧବ ହେ !
ନଇଲେ କପାଳି
ଞରେଁ ସ୍ତ୍ରୀ ହତ୍ୟା ସେ ଲଭବେ ଭାବଗ୍ରାହୀ । ୧୦ ।

ଟାଣପଣେ ଯେତେ ଯେ ଅସୁର କଂସ ଘର
ଟୋକାଗୋଷ୍ଠି ବେଳୁ ତା ମାଇଲେ ଚକ୍ରଧର
ଉଦ୍ଧବ ହେ !
ଟାଣପଣ ଗଲା
ଟପକର ପଣେ ସେ ଅକ୍ରୂର ଭଣ୍ଡି ନେଲା । ୧୧ ।

ଠିଆ ହୋଇଥିଲୁ ଆମ୍ଭେ ଷୋଳସହସ୍ର ଗୋଇ
ଠଣାଏ ମାରି ଯଶୋଦା ଗ୍ରୋଳରେ ଖଠାଇ
ଉଦ୍ଧବ ହେ !
ଠାରିଲେ ଶ୍ରୀଧର
ଠେଦି ଯଶୋଦାଙ୍କୁ ଫେଡ଼ି ଦେଲେ ଚକ୍ରଧର । ୧୨ ।

ତାଙ୍କ ଯାହା ବୋଇଲେ ତା ବଚନେହେଁ ପାଳ
ତୋଳା ପୂର୍ବାଇଣି ନ ଦେଖିଲୁଁ ବନମାଳୀ
ଉଦ୍ଧବ ହେ !
ତଙ୍କ ଗାରଡ଼ିଆ
ତର ଭାବେ ଲକ୍ଷ୍ମୀ ଖଣ୍ଟି ନ ପାଇଲେ କ୍ଷୁଆ । ୧୩ ।

ତୋଷକଳ୍ପ ଅମୃତ ଯେତେ ଉଦ୍ଧାର ଯତନେ
ଛାଳେହେଁ ଗୋପୀଙ୍କି ହେତେ କଲେ ଭଗବାନେ
ଉଦ୍ଧବ ହେ !
ଛଦ୍ମେ ନାଶ ଯାଇ
ଛାଲେ ନାଶଗଲୁଁ ଆମେ ଗୋପପୁର ଲୋଇ । ୧୪ ।

ଅନୁଭବୀ ହୋଇ ନ ଜାଣି ଗୋପୀଙ୍କ ଦୁଖ
ଆଶାଭଗ୍ନ ପକ୍ଷୀ ପ୍ରାଏ କଲେ ପଦ୍ମମୁଖ
ଉଦ୍ଧବ ହେ !
ଅନଙ୍ଗଙ୍କ ଜାଳା
ଅନୁବ୍ରତେ ଦହୁଅଛୁ ପ୍ରଭୁ ନନ୍ଦବଳା । ୧୫ ।

ଜନପୁରେ କେତେ କେତେ ପୁରୁଷ ନାହାନ୍ତି
ତରୁଣ ତନସ୍ଥ ଶ୍ୟାମ କେହୁ ନ ଦଶନ୍ତି
ଉଦ୍ଧବ ହେ !
ତପ ଯେବେ ଥାନ୍ତା
ତୁଳସୀ ବନ୍ଧର କର୍ପା ଗୋପରୁ ଯାଆନ୍ତା । ୧୬ ।

ଥିଲେ ଯେତେ ଧନ କୃଷ୍ଣ ଗୋପପୁରେ ରହି
ଥିଲି ଯାଙ୍କ ଲକ୍ଷ୍ମୀ ଥିଲା ଚତୁର୍ବର୍ଗ ହୋଇ

ଉଦ୍ଧବ ହେ !
ଥାନ ଉଗାନ୍ତି
ଥାବର ବନ ପର୍ବତ ମାଡ଼ିପଡ଼ିଅଛୁ । ୧୭ ।

ଦୟାଳୁ ହୋଇଣ କୃଷ୍ଣ ଦାରୁଣ ହୋଇଲେ
ଦୀନବନ୍ଧୁ ଯଶୋଦାଙ୍କୁ ଛାଡ଼ି ମୂରୁଛିଲେ
ଉଦ୍ଧବ ହେ !
ଦୀନବନ୍ଧୁ କେଉଁଠେ ?
ଦୁହିତା ଉଉଣୀ ଅମ୍ଭେ ନ ପଡ଼ିଲୁ ମନେ । ୧୮ ।

ଧୂର ନୁହେ ମଧୁବନ ଯମୁନା ସେ ପାର
ଧାଇଁ ଯାଇଁ ଗୋପୀ ଅମ୍ଭେ ଅଧି ବ ନ ପାର
ଉଦ୍ଧବ ହେ !
ଧର୍ମ ନ ଲଙ୍ଘୁଛୁ
ଧରଣୀପଟର ଆଙ୍କ୍ଷି ପ୍ରତିପାଳୁଅଛୁ । ୧୯ ।

ନାମ ରୂପ ଗୁଣ କର୍ମ ଏ ଗୃହ ଭଣ୍ଡାର
ନିରନ୍ତରେ ଅଣ୍ଡେ କର ହୋଇଲୁ ଅନ୍ତର
ଉଦ୍ଧବ ହେ !
ନିଦୟ କରୁଣା
ନାରଦାଦ ମୁନିମାନେ କହନ୍ତି କହ ବଣା । ୨୦ ।

ପରମ ପୁରୁଷ ପ୍ରୀତି କଲେ ଏବେ ମାୟା
ପ୍ରେମାନନ୍ଦ ପ୍ରଭୁଙ୍କଲେ କରୁଣା ନିର୍ଦୟା
ଉଦ୍ଧବ ହେ !
ପ୍ରମାଣ ବଚନ
ପଞ୍ଚ ଅଗ୍ନି ପୋଡ଼ୁଥାଇ ହୃଦୟ ଚେସନ । ୨୧ ।

ଯେତିକି ଅନ୍ତର ଲକ୍ଷ୍ମୀ ଭଜନ୍ତି ତାହାଙ୍କୁ
ଯାଇଲା ଆମ୍ଭ ଅଦୃଷ୍ଟ କହିବୁ କାହାକୁ
ଉଦ୍ଧବ ହେ !
ଫୁରୁଣା ଭଗିଲା
ଯେତେଣ କହିଲୁ କୃଷ୍ଣ ନରଦେ ଛାଡ଼ିଲା । ୨୨ ।

ବେଣୁଧର ଯେଉଁ ଦିନେ ଜାତ ନନ୍ଦଘରେ
ବ୍ରହ୍ମାଦି ଦେବତା ଥିଲେ ଏହି ଗୋପପୁରେ
ଉଦ୍ଧବ ହେ !
ବଡ଼ ଆଶା ଥିଲା
ବିହିର ବିଯୋଗେ ଯାତା ଦେଖାଇ ହରିଲା । ୨୩ ।

ଭୃତ୍ୟ ହେଲେ ଅପରାଧୀ ପ୍ରଭୁ କ୍ଷମାନିଧି
ଭୃତ୍ୟର ଭାବନା ନ ରଖିଲେ ଦୟାନିଧି
ଉଦ୍ଧବ ହେ !
ଭଜିଲାକୁ ଭଜି
ଭଜିଲେ କେମନ୍ତେ ନ ଭଜିବେ ଦୟାନିଧି । ୨୪ ।

ମାଧବ ହେ ଯେତେ ପାରେ ମନ ଅଭିମାନ
ମନେ ଯାହା କଲେ ତାହା ଜାଣେ ଭଗବାନ
ଉଦ୍ଧବ ହେ !
ମନରୁ କି ଯାଇ
ମନୋରମ୍ୟ ହୋଇ ସବୁ ଘଟେ ପୂରିଥାଇ । ୨୫ ।

ଯେତେ ଦିନେ ବିଚ୍ଛେଦ ସେ ଯେମନ୍ତ ବେଭାର
ଜଗନ୍ନାଥ ଦୟା ଆଉ ନାହିଁ ଗୋପପୁର

ଉଦ୍ଧବ ହେ !
ଯାର ଏକମନ
ଯେତେବେଳେ ଇଚ୍ଛା ତେତେବେଳେ ଦରଶନ । ୨୬ ।

ରଜକରେ ଜାଣିଲେ କୃଷ୍ଣଙ୍କ ପ୍ରତେ ନାହିଁ
ରସ ଭଗ୍ନ କରି ବସ୍ତ୍ର ଗଲେ ଉପୁଜାଇ
ଉଦ୍ଧବ ହେ !
କର୍ମେ ନାହିଁ ବନ୍ଧ
ରାଧିକାଙ୍କୁ ଭଣ୍ଡି କପାଁ ନଇଲେ ଶ୍ରୀବତ୍ସ । ୨୭ ।

ଲକ୍ଷ୍ମୀପତି ଅଜ୍ଞାମତେ ସ୍ୱୟଂ ଆତ୍ମାରାମ
ଲଭ୍ୟେ ଭୂତେ ତୁମ୍ଭଙ୍କୁ ଦେଖିଲୁଁ କୃଷ୍ଣସମ
ଉଦ୍ଧବ ହେ !
ଲଭିଲୁଁ କାରଣ
ଲଭିଲେ ଅହଲ୍ୟା ପାଦ କଲୁଁ ସ୍ମରଣ । ୨୮ ।

ବସୁଦେବର ତ ବାସୁଦେବ ନନ୍ଦସୁତ
ବଚନେ ବୋଇଲେ ଯେ ଯଶୋଦା ଅମ୍ଭ ମାତ
ଉଦ୍ଧବ ହେ !
ବନ୍ଧୁ ଅମ୍ଭ ଗୋଷ୍ଠ
ବଚନରୁ ଫିଟିଲେ ବଳାଉ ନୋହେ କେହି । ୨୯ ।

ଶ୍ରୀବତ୍ସ ଲାଞ୍ଛନ ଦେଖି ମନେ ଭଳୁଥାଇ
ଶିବବ୍ରହ୍ମ କରଣ ହୃଦରେ ଛନ୍ତି ବହି
ଉଦ୍ଧବ ହେ !
ଶିରେ ଯୋଡ଼ି କର
ସାନନ୍ଦ ମନରେ ତାଙ୍କୁ ମାଗୁଅଛୁଁ ବର । ୩୦ ।

ଶୁଣିଣ ଗୋପୀଙ୍କ ଭକ୍ତି ବଚୃଶ ଉଦ୍ଧବ
ଶୋକେ ଗଦଗଦ ହୋଇ ପୁଲକିତ ଭାବ
ଗୋପୀମାନେ ଗୋ !
(ଶୁଣ) ବରଜ ସୁନ୍ଦର !
ସମ୍ମୁଖ ସମ୍ବାଦ ଯାହା କହୁଛନ୍ତି ହରି । ୩୧ ।

ସକଳ ଗୋପୀନ୍ତ ଚାଇ କହବୁ ଏମନ୍ତ
ସବୁ ହୋଇଁ ଜନ୍ମ ଅମ୍ଭ ଭାଗ୍ୟର ଅର୍ଥ
ସେ ଅମ୍ଭର
କାଜକର୍ମ ଗୋଈ
ସଖୀଙ୍କର ନାମ ଗୋପୀନାଥ ନାମ ବହି । ୩୨ ।

ହରଷ ହୋଇଲେ ଗୋପୀ ପ୍ରବୋଧ ବଚନେ
ହରି କରୁଣା ଉଦ୍ଧବ ଅଛୁ ଅମ୍ଭ ମନେ
ଉଦ୍ଧବ ହେ !
ହରଷ ବଚନ
ହରଷେ ମେଲାଣି ଦେଲୁଁ ଯାଅ ମଧୁବନ । ୩୩ ।

ଯତନେଣ ସକଳ ଗୋଈ କରନ୍ତି ମଙ୍ଗଳ
ଛଛିନେ ଉଦ୍ଧବ ତୁମ୍ଭେ କର ଅନୁକୂଳ
ଉଦ୍ଧବ ହେ !
ଘମୁଟରେ କହବ
ନନ୍ଦ ଜୁବି ଚୁମ୍ବିଅଛୁ କି ଅଛା ହୋଇବ । ୩୪ ।



# କୃଷ୍ଣ ବିଚ୍ଛେଦ ଚଉତିଶା

---

ପ୍ରେମ କାତର ପ୍ରାଣର ଗୀତଟି କୃଷ୍ଣବିଚ୍ଛେଦ ଚଉତିଶା ଅନ୍ୟତମ । ଏହାର ସ୍ୱତଃସ୍ଫୂର୍ତ୍ତ ସ୍ୱର ସହିତ ଭାବ ଏତେ ମଧୁର ଛନ୍ଦରେ ଗ୍ରଥିତ ହୋଇଅଛି ଯେ ଗାନ ମାନେହିଁ ଛଳଛଳୀ ଅଶ୍ରୁ ଉଠେ । ପର୍ବରବାର କଥା ଅଧୁନିକ ଯୁଗରେ ଏ ଚଉତିଶା ପରି କେତେଟା ଗୀତ ରଚିତ ହୋଇଅଛି ଯାହାକୁ ସମସ୍ତ ଜାତିର ସମ୍ପଦ କୁହାଯାଇ ପାରେ ।

କୃଷ୍ଣକଥା ମନେ ଗୁଣି
କାମେ ଅଶକତ ବ୍ରଜ-ତରୁଣୀ ଯେ
କହନ୍ତି କାକୁସ୍ତବାଣୀ
ମୋ କୃଷ୍ଣ ଯେ । ୧ ।

ଖଞ୍ଜିଥିଲୁଁ ଶ୍ରୀଚରଣେ
ଖୋଜ ହିଲୁଁ ଥିଲୁ ଶ୍ରୀବୃନ୍ଦାବନେ ଯେ
କ୍ଷଣେ ନ ପଡ଼ିଲୁଁ ମନେ
ମୋ କୃଷ୍ଣ ଯେ । ୨ ।

ଶୃଙ୍ଗାର ମଣି ଗୋବନ
ଗେଲେ ଅସୁଥାନ୍ତି ଧେନ ଗୋବୃନ୍ଦ ଯେ
ଗୋକୁଳ-ନାୟକ ଶୃନ
ମୋ କୃଷ୍ଣ ଯେ । ୩ ।

ଘର ଯୋଉବନ ଦେଲ
ଘନ-ବରନାକୁ କେ ଯେନଗଲ ଯେ
ଯୋଉଁ ଧନ ନ ସଗଲ
ମୋ କୃଷ୍ଣ ଯେ । ୪ ।

ନାସ୍ୱାଶ କରଣ ଗଲେ
ନେଉଟ ସନ୍ଦେଶ କିଛି ନ ଦେଲେ ଯେ
ନୀର ବିନୁଁ ମୀନ ମଲେ
ମୋ କୃଷ୍ଣ ଯେ । ୫ ।

ଚନ୍ଦ୍ରମା ବଦନ ତାର
ଚକୁରୀ-ନାରୀଙ୍କ ଜୀବ ଆଧାର ଯେ
ଚୋର କରିନେଲେ ଚୋର
ମୋ କୃଷ୍ଣ ଯେ । ୬ ।

ଛଇଳ ସୁନ୍ଦର କାହ୍ନ
ଛୁଆ ମୃଗ ପ୍ରାଏ ବେନି ନୟନ ଯେ
ଛଣେ ଛଣେ ଅରେବନ
ମୋ କୃଷ୍ଣ ଯେ । ୭ ।

ଯେତେ ଅଇଲେ ଅକ୍ରୂର
ଯଶୋଦା-ନନ୍ଦନ କଲେ ସଂହାର ଯେ
ଯଗ ଥୋଇ ଭିନପୁର
ମୋ କୃଷ୍ଣ ଯେ । ୮ ।

ଝମଣ୍ଟେ ତାଙ୍କୁ ନ ଦେଖି
ଝୁରୁ ଥାଇ ଅମ୍ଭ ଏ ବେନି ଆଖି ଯେ
ଏବେ କି କରିବା ସଖି ?
ମୋ କୃଷ୍ଣ ଯେ । ୯ ।

ନିର୍ମଳ ବଦନ ତାର
ନିରେଁ ବରଷିବ ଅମ୍ଭ ଶରୀର ଯେ

ନାଶିବେ ଝଲ ଅମ୍ବର
ମୋ କୃଷ୍ଣ ଯେ । ୧୦ ।

ଟାଣପଣ ଯେତେ ଥିଲା
ଟେକି ଗୋବର୍ଦ୍ଧନ ଗିରି ଧଇଲା ଯେ
ଟପକର ଏବେ ହେଲା
ମୋ କୃଷ୍ଣ ଯେ । ୧୧ ।

ଠାବ କରି ନ ପାରିଲୁଁ
ଠିକେ ଗୋଡ଼ି ଅମ୍ଭେ ଅନାଥ ହେଲୁଁ ଯେ
ଠୁଳ ନଥି ହରାଇଲୁଁ
ମୋ କୃଷ୍ଣ ଯେ । ୧୨ ।

ଡାକନ୍ତି ମୁରଲୀସ୍ୱନେ
ଡଙ୍କଗାରଢ଼ିଆ କି ମନ୍ତ୍ର ଜାଣେ ଯେ
ଡେଇଁ ଯାଇଁ ବୃନ୍ଦାବନେ
ମୋ କୃଷ୍ଣ ଯେ । ୧୩ ।

ଢଙ୍ଗ ପଣେ ସେବିଥିଲୁଁ
ଢିଠିଆ ପୁରୁଷ ଢଙ୍ଗେ ଭୁଲିଲୁଁ ଯେ
ଢାଳେ ନଥି ହରାଇଲୁଁ
ମୋ କୃଷ୍ଣ ଯେ । ୧୪ ।

ଅଗୋ ସଖୀଜନେ ମିତ !
ଅକୁଳ ହୋଉଛି ଅମ୍ଭର ଚିତ୍ତ ଯେ
ଆସି କର କୋଳାହଳ
ମୋ କୃଷ୍ଣ ଯେ । ୧୫ ।

ତ୍ରିଭଙ୍ଗି ରୂପ ଶୃଙ୍ଗାଣୀ
ତରଳ ହୋଏ ନବଯଉବନୀ ଯେ
ତନୁର ଅଙ୍ଗ ପଦ୍ମନୀ
ମୋ କୃଷ୍ଣ ଯେ । ୧୬ ।

ଥିଲା ଦିନେ ବୃନ୍ଦାବନେ
ଥିର ନୋହେ ମନ ନନ୍ଦ ସଦନେ ଯେ
ଥକିତ ମୁରଲୀ ସ୍ୱନେ
ମୋ କୃଷ୍ଣ ଯେ । ୧୭ ।

ଦଇବ କି ଦୁଖ ଦେଲା
ଦରିଦ୍ର-ନିଧିକି କେ ଘେନଗଲା ଯେ
ଦିବସ ଅନ୍ଧାର ହେଲା
ମୋ କୃଷ୍ଣ ଯେ । ୧୮ ।

ଧରାଇ ନେଲା ରାଜନ
ଧରିଥିଲୁଁ ତାଙ୍କ ପଦ୍ମ ଚରଣ ଯେ
ଧାଡ଼ାଇଲା ଉନ୍ମାଦନ
ମୋ କୃଷ୍ଣ ଯେ । ୧୯ ।

ନବୀନ ସୁନ୍ଦର ଶ୍ୟାମ
ନବଯୁବତୀଙ୍କ ନୂଆ ମଦନ ଯେ
ନ ଦେଖି ଗଲା ଜୀବନ
ମୋ କୃଷ୍ଣ ଯେ । ୨୦ ।

ପୀରତି ଅନଳ ହେଲା
ପତଙ୍ଗ ଯେସନେ ଉଡ଼ି ପଡ଼ିଲା ଯେ

ପ୍ରାଣ ତ ତହିଁ ନ ଗଲା
ମୋ କୃଷ୍ଣ ଯେ । ୨୧ ।

ଫୁଟିଥାଉ ପଦ୍ମବନ
ଫୁରୁଣା ହୋଅଇ ଭ୍ରମର ମନ ଯେ
କରୁଥାଉ ସୁଧାପାନ
ମୋ କୃଷ୍ଣ ଯେ । ୨୨ ।

ବେଦନା ଜାଣେ ଅପାର
ବନେ ବୁଲୁଥିଲୁଁ ଧେନ ସଙ୍ଗର ଯେ
ବଶ ହୋଇଥିଲୁଁ ତାର
ମୋ କୃଷ୍ଣ ଯେ । ୨୩ ।

ଭଲା କଣ୍ଟକର ଗଲେ
ତିଳ ଭିଷା ଦେଇ ଯାଇ ରହିଲେ ଯେ
ଭଲା ତ୍ରିଲ୍ଲଇଣ ଗଲେ
ମୋ କୃଷ୍ଣ ଯେ । ୨୪ ।

ମଥୁରା ସମସ୍ତେ ଯିବା
ମହାପ୍ରଭୁ ପଣ ଶିରେ ଥୋଇବା ଯେ
ମରମ କଥା କହିବା
ମୋ କୃଷ୍ଣ ଯେ । ୨୫ ।

ଜାଣିଲୁ ମଥୁରା-ନାରୀ
ଯତନେ ଅଣିବା ଶ୍ରୀଭୁଜ ଧରି ଯେ
ଯଶ ଥିବ ଭବ ପୁରୀ
ମୋ କୃଷ୍ଣ ଯେ । ୨୬ ।

ରସିକ ନାଗର ମଣି
ରସ କଉତୁକ ମନରେ ଗୁଣି ଯେ
ରୋଷେ ନ ଥସନ୍ତି ପୁଣି
ମୋ କୃଷ୍ଣ ଯେ । ୨୭ ।

ଲାଜଭୟ ଦୂରକର
ଲାବଣ୍ୟ-ନାଗର ଆଣିବା ଧରି ଯେ
ଲୋକେ ଦେଖିଥିବେ ପୂରି
ମୋ କୃଷ୍ଣ ଯେ । ୨୮ ।

ବଳେ ଯେବେ ନ ଆସିବେ
ବନମାଳା ଦେଇ ବର ଆଣିବା ଯେ
ବଳେ କରାଇବା ଶୂରେ
ମୋ କୃଷ୍ଣ ଯେ । ୨୯ ।

ସତେ ଆସିବେ ଶ୍ରୀଧର
ଶତେ ଚମ୍ପା ଦେବି ଶମ୍ଭୁ ଶିରର ଯେ
ସାକ୍ଷୀ ହୁଅ ଜନା ମୋର
ମୋ କୃଷ୍ଣ ଯେ । ୩୦ ।

ସତେ ଆସିବେ କହ୍ନାଇ
ଶରଦ-ଚନ୍ଦ୍ରମା ଅସିବେ ଉଇଁ ଯେ
ଶତେ ଚମ୍ପା ଫୁଟିବଇଁ
ମୋ କୃଷ୍ଣ ଯେ । ୩୧ ।

ସଖୀଏ ଥାଇ ବୋଇଲେ
ସୁଫଳ ଏ କଥା ହେଉ ବୋଇଲେ ଯେ

ଛଛନେ କରବା ଲୀଳା
ମୋ କୃଷ୍ଣ ଯେ । ୩୨ ।

ହରଷ ହୋଇଣ ଗୋଈ
ହରଷେ ଯେ ଯାହା ଭୁବନେ ଯାଇ ଯେ
ହରହର ନାମ ଧ୍ୟାଇ
ମୋ କୃଷ୍ଣ ଯେ । ୩୩ ।

ଷୀଣ ହେଲା ହନୁମାନ
ଛଛନେ ଭଣଇ ଗୋପଜୀବନ ଯେ
ଛଇଲ ନିଧିର ଗୁଣ
ମୋ କୃଷ୍ଣ ଯେ । ୩୪ ।



# ନବଘନ ଚଉତିଶା

ଉତ୍କଳୀୟ ପ୍ରାଣରେ ସହଜ ଆନନ୍ଦଦାୟକ ଛନ୍ଦରେ ରଚିତ ଏହି ନବଘନ ଚଉତିଶା ବହୁଦିନ ହେଲା ବିସ୍ମୃତି ଗର୍ଭରେ ଲୁଚି ଯାଇଥିଲା । ଏହାର ପଦାବଳୀ ଏତେ ସରଳ ଓ ଏତେ ମଧୁର ଯେ ପଢ଼ିଲା ମାତ୍ରେ ଏହାର ବିବିଧ ଅଙ୍ଗରେ ହୃଦୟ ଭରିଯାଏ ।

କୃଷ୍ଣ କଳା ପ୍ରୀତି ଚନ୍ଦ୍ର
କହଇ ଘନକୁ ଗୋପଯୁବତୀ
ନବଘନ !
ନଇଲେ ସୁଖ ସମ୍ପତ୍ତି
ନବଘନ । ୧ ।

ଖାଇବା ଖେଳିବା ସୁଖ
କ୍ଷଣକେ ଦେଖିଲେ ପଙ୍କଜମୁଖ
ନବଘନ !
ଦେଇଗଲେ ନାନା ଦୁଃଖ
ନବଘନ । ୨ ।

ଗୋବର୍ଦ୍ଧନ ଇନ୍ଦ୍ର ଛଳରେ
ଗିରିକି ଟେକିଲେ ବାମଭୁଜରେ
ନବଘନ !
କେ କରି ପାରେ ସଂସାରେ
ନବଘନ । ୩ ।

ଘନ ଶାମଳିଆ କାହ୍ନୁ,
ଘନ ଘନ କର ବଜାନ୍ତୁ ବେଣୁ
ନବଘନ !
ଘଡ଼ିଏ ନ ଯାଏ ମନୁ
ନବଘନ । ୪ ।

ନୟନେ ନ ଦେଖି ଦଣ୍ଡେ
ନ ରହେ ଜୀବନ ଆମ୍ଭର ପିଣ୍ଡେ ;
ନବଘନ !
ବଜ୍ର କି ପଡ଼ିଲା ମୁଣ୍ଡେ
ନବଘନ । ୫ ।

ଚନ୍ଦ୍ରାମଣି ଅମ୍ଭ ପ୍ରୀତ
ଚଉଦ ଭୁବନ ଲୋକେ ଜାଣନ୍ତି
ନବଘନ !
ଅପ୍ରୀତିରେ କଲେ ପ୍ରୀତି
ନବଘନ । ୬ ।

ଛାଡ଼ି ଗଲ ଦନୁ ଦଳି
ଛାଡ଼ିଲେ ମରୁଁ ଗୋପ ଗୁଆଳୀ
ନବଘନ !
ପ୍ରୀତି କଲେ ଛଳ ଛଳ
ନବଘନ । ୭ ।

ଯଶୋଦା ନନ୍ଦନ କାହ୍ନୁ
ଜୀବ ଥିବା ଯାକେ ନ ଛିଡ଼ିବେ ମନୁ

ନବଘନ !
ଜୀବଗଲେ ଯିବେ ମନ୍
ନବଘନ ।୮।

ଝାଡ଼ୁସଙ୍ଗିଆର ସଙ୍ଗେ
ଝସକେତନର ଅମିୟ ରଙ୍ଗେ
ନବଘନ !
ମିଶିଯିବୁ ତାଙ୍କ ସଙ୍ଗେ
ନବଘନ ।୯।

ନ ରୁଚଇ ଘର ବର
ନବଘନଆର ମୁରଲୀ ସ୍ୱର
ନବଘନ !
ଶୁଣି ହେଲୁ ଜର ଜର
ନବଘନ ।୧୦।

ଟାଣେ ବାନ୍ଧଥାଇ ଯୁଡ଼ା
ଟଙ୍କଏ ଟଙ୍କଏ ମଞ୍ଜୀ ପାଖୁଡ଼ା
ନବଘନ !
ଖୋସିବାରୁ ଘରବୁଡ଼ା
ନବଘନ ।୧୧।

ଠାଇ ଅଛୁ କାହ୍ନୁଁ ଶିଖି
ଠାରୁ ଥାଇ ଖଣ୍ଡ ହୃଦରୁ ଅଖି
ନବଘନ !

ଧଇର୍ଯ୍ୟ ନ ପାରୁ ଭଜି
ନବଘନ । ୧୨

ଡର ନ ଥାଇ କାହାକୁ
ଡେଇଁ ପଡ଼ୁଥାଉ ତାର ବୋଲକୁ
ନବଘନ !
ଧାଇଁ ଥାଉ ଅରଣ୍ୟକୁ
ନବଘନ । ୧୩ ।

ଢାଲେଣ୍ଟେଁ ଅମ୍ଭେ ସାହସୀ
ଡମ୍ଫଡ଼ଣ ଦେଲୁ ବାହୁତଳଣି
ନବଘନ !
ଏବେ ତ ମରୁଛୁଁ ଝୁରି
ନବଘନ । ୧୪ ।

ଅଲପ ସ୍ନେହେନ୍ଦ କଲ
ଅଧରୁ ଅମିୟ ଚଖାଇ ଦେଲ
ନବଘନ !
ମୋହନୀ ଲଗାଇ ଗଲ
ନବଘନ । ୧୫ ।

ତୁଣ୍ଡି ବୋଲୁଥାଇ ଯେତେ
ତହିଁର ଶୋଚନା ନ ଥାଇ ଚିତ୍ତେ
ନବଘନ !
ତନ୍ତ୍ର କରୁଥାଇ ତେତେ
ନବଘନ । ୧୬ ।

ଥେଙ୍ଗପଣ ଶିରୋମଣି
ଥଣ୍ଟ ଚିର ବକା ମାରିଲେ ପୁଣି
ନବଘନ !
ଚରିତ୍ର ସେ କଥା ଶୁଣି
ନବଘନ । ୧୭ ।

ଦୁଷ୍ଟଙ୍କ ନାଶି ପାଳେ ସନ୍ଥ
ଦାରୁଣ ଦସ୍ୟୁଙ୍କୁ ସେ ଜୋଡ଼ିନାଥ
ନବଘନ !
ଭବ ହୋଇଲୁଁ ଅନାସ୍ତ
ନବଘନ । ୧୮ ।

ଧର୍ମ କେମନ୍ତେ ସହୁଛ ?
ଧାରି ନେତ୍ର ଆମ୍ଭ ଜୀବ ଗଲୁଛି
ନବଘନ !
ମଙ୍ଗଳ ହାର ହୋଉଛି
ନବଘନ । ୧୯ ।

ନିସ୍ପୃହ କରୁଣ ଗଲେ
ନ ରହୁ ଅସିରୁ ବୋଲି ବୋଲିଲେ
ନବଘନ !
ସେ କଥାଇଁ ଘସୋଇଲେ
ନବଘନ । ୨୦ ।

ଘାଇଲେ ଦଗର ନାଙ୍କ
ପଡାଇଲେ ବେଗେ ମୋତେ ଘାସୋଇ

ନବଘନ !
କୂଅ ପ୍ରୀତି ପର୍ କର
ନବଘନ । ୨୧ ।
ଫେଡ଼ି ନ କହ୍ନୁ କାହାକୁ
ଘୂଲ୍ ଡୋଳ ନେଲେ ବୃନ୍ଦାବନକୁ
ନବଘନ !
ସେ ଦିନ୍ ଜାଣିଲୁଁ ତାଙ୍କୁ
ନବଘନ । ୨୨ ।
ବଧୂସ ଗରବେ ପଡ଼ି
ବୃନ୍ଦାବନଅଙ୍କୁ ସେ ଉଣେ ନୋଡ଼ି
ନବଘନ !
କୁଳ ଶୀଳ ଲଜ୍ଜା ଛଡ଼ି
ନବଘନ । ୨୩ ।
ଭାଙ୍ଗିଲେ ସବୁ ଭରସା
ଭବବନୋଦଅ ଦେଲେ ଟ ଦଣ୍ଡା
ନବଘନ !
କର ଗଲେ ଲୋକଦଶା
ନବଘନ । ୨୪ ।
ମତ୍ତ ମଯୂରୀ ଡାହୁକ
ମେଘ ଘଡ଼ଘଡ଼ ମଣ୍ଡୂକ ଡାକ
ନବଘନ !
କାମକୁ ନ ଥାଇ ଦକ
ନବଘନ । ୨୫ ।

ଜନ୍ମ ଅଛି ଆମ୍ଭ ଘର

ଯାଉଥାଇ ପାହି ରଜନୀ ରାତ

ନବଘନ !

କୃଷ୍ଣ ସଙ୍ଗେ ରଙ୍ଗେ ମାତ

ନବଘନ । ୧୬ ।

ରଙ୍ଗେ ଅସ୍ଥାନ୍ତି ବନ୍

ପଛେ କଳା ଧଳା ଆଗରେ ଧେନୁ

ନବଘନ !

ଶୁହିଁ ଚମକଇ ତନୁ

ନବଘନ । ୧୭ ।

ଲଲାଟେ କସ୍ତୁରୀ ଚିତା

ଦୋଳୁଥାଇ ନାସେ ଗଜମୁକୁତା

ନବଘନ !

ଭଙ୍ଗ ଦେବେ ପଦ୍ମବ୍ରତା

ନବଘନ । ୧୮ ।

ବ୍ୟାଘ୍ର ନଖ ହେମ ଖଣ୍ଟି

ବଉଳ ମୁକୁତା ଗୋଟିକ ଗୋଟି

ନବଘନ !

କଣ୍ଠଘଟେ ଥାଇ ଘୋଟି

ନବଘନ । ୧୯ ।

ଶ୍ରବଣେ ମଣି କୁଣ୍ଡଳ

ସୁନ୍ଦର ଦିଶଇ ସରୁ ଚଞ୍ଚଳ

ନବଘନ !

ଜାଣଇ ବର୍ଣ୍ଣେକ ବର୍ଣ୍ଣ
ନବଘନ । ୩୮ ।
ସେ ଯେଉଁ ଅପୂର୍ବ ରସ
ସାରସ ବଦନ ଅମୃତ ରସ
ନବଘନ !
ବରଷଇ ରସ ରସ
ନବଘନ । ୩୯ ।
ସମସ୍ତେ କହନ୍ତି ବାଣୀ
ସତେ କି ଅଟିବେ ମୋ କମ୍ବୁପାଣି
ନବଘନ !
ସେବକ ତା ମନ ଜାଣି
ନବଘନ । ୩୦ ।
ହର ଗୁଣିମାନ ଗୁଣି
ହତ ହୋଇବ କି ଗୋପକାମିନୀ
ନବଘନ !
ହସୁଅ ମୁରଲୀପାଣି
ନବଘନ । ୩୩ ।
କ୍ଷମେ ପାଇ ପଦ୍ମପାଦ
ଛନ୍ଦେ ଭଣିଲେ ପରମାନନ୍ଦ
ନବଘନ !
କରମ ମୋ ବଡ଼ ମନ୍ଦ
ନବଘନ । ୩୪ ।

---

# କୃଷ୍ଣ ବିରହ ଚଉତିଶା

କୃଷ୍ଣ ବିରହ ଚଉତିଶା ଉତ୍କଳର ପୁରାତନତମ ଚଉତିଶାମାନଙ୍କ ମଧ୍ୟରୁ ଅନ୍ୟତମ । ଏହାର ଭାଷା ଉପରେ ପ୍ରାଚୀନତାର ମୁଦ୍ରା ବିଶେଷ ଭାବରେ ଅଙ୍କିତ ଅଛି । ବିରହର ଉତ୍କଣ୍ଠା ପ୍ରାଚୀନ ଢଙ୍ଗରେ କବି ଗୋକୁଳ ନରେନ୍ଦ୍ର ଯେପରି ପ୍ରକାଶ କରିଅଛନ୍ତି ତହିଁରୁ ଆଧୁନିକ କବିମାନଙ୍କର ଯଥେଷ୍ଟ ଶିଖିବାର ଅଛି । ଓଡ଼ିଆ ଭାଷାର ମୌଳିକ ପ୍ରକାଶିକା ଶକ୍ତି ପୁରାତନ କବିତାରେ ଅନୁସନ୍ଧେୟ । ଭାଷା ଦିଗରୁ ଦେଖିଲେ ଆଧୁନିକ ଦୁର୍ବଳ କବିତା, ସେମାନଙ୍କର ସକଳ ଗୁଣ ସତ୍ତ୍ୱେ, ବିଦେଶୀ ଢଙ୍ଗରେ ଢଳା ।

କମଳ ଲୋଚନ କୃଷ୍ଣ ମନ ଅନୁରାଗେ
କହନ୍ତି କୋମଳ ବାଣୀ ଉଦ୍ଧବର ଆଗେ
କୁରଙ୍ଗୀ ନୟନୀ ରାଧା ବିରହ-ଅନଳେ
କୁସୁମ-ବିଶିଖ ମୋତେ ଦହୁଅଛି ବଳେ । ୧ ।

ଖେଡ଼ି କଉତୁକ ଆଦି ନାନାବିଧି ରସ
ଖଣେହେଁ ମନକୁ ମୋର ନ କରେ ଉଲ୍ଲାସ
ଖଞ୍ଜନ-ନୟନୀ ଗୁଣ ଗୁଣି ନିଶିଦିନ
ଖେଦ-ଜଳଧିରେ ମୋର ନିମଜ୍ଜିଲା ମନ । ୨ ।

ଗହନେ ବିପିନେ ଉଖଗ୍ରାନ୍ ସୁଧା ସଙ୍ଗେ
ଗାଟିଉ ମୁଁ ରହିଲି ନାନା ରତି-ରସ ରଙ୍ଗେ
ଗାଢ଼ ଆଲିଙ୍ଗନ ରାମା କରୁଥିଲା ଯେତେ
ଗରଳ ପ୍ରାୟେକ ସ୍ମୃତେ ଦାରୁଅଛି ମତେ । ୩ ।

ଘାରଇ ବିଷମ ଶର ପଡ଼ି ମୋର ଅଙ୍ଗ
ଘୋର ବିଷାଇଲା ଶରେ ଯେସନେ କୁରଙ୍ଗ

ଘନ ବନେ ଶ୍ୟାମା କରୁଅଛୁ ଯେତେ ଭାବ
ଘେନଲେ ଏ ନିମିଷେ ରହିବ ମୋର ଜୀବ । ୪ ।

ଙାଚକ-ନୟନୀ ବିନ୍ ନ ରୁଚଇ ଅନ
ନ ସହଇ ଅଙ୍ଗେ ମୋର ପବନ ଚନ୍ଦନ
ଙଶାକର କିରଣ ପାବକ ସମ ବହ୍ନି
ନ ରହିବ ଜୀବ ମୋର ନ ଦେଖିଲେ ସଖ୍ରୀ । ୫ ।

ଚନ୍ଦ୍ରମା-ବଦନୀ ମୋତେ ଘେନ ଏକ ଦିନ
ଚୁମ୍ବି ମୋ ଅଧର ଯାହା ବୋଇଲା ବଚନ
ଚଞ୍ଚଳ ନୟନୀ ବିନ୍ ନ ରହଇ ଜୀବ
ଚମକଇ ଚିତ୍ତ ମୋର ଚଢୋଇ ତା ଭାବ । ୬ ।

ଛାଡ଼ିଣ ଅଇଲା ବିନୁ ଶଶୀମୁଖୀ ରାଧା
ଛଣ ଛଣକେ ମଦନ କରୁଅଛୁ ବାଧା
ଛାଡ଼ିବ ଜୀବନ ପୂର୍ଣ୍ଣ ଚନ୍ଦ୍ର-ମୁଖୀ ବିନୁ
ଛଣେ ନ ରହିଣ ଛାଡ଼ି ଯା ରେ ମୋର ତନୁ ! ।୭।

ଯେତେ ଦିନ ନ ଦେଖିଲି ଚନ୍ଦ୍ରମାବଦନ
ଜୀବନ ଦହଇ ମୋର ଦାରୁଣ ମଦନ
ଜୀବନ ରହିଛି ସ୍ନେହ କଥା ମନେ ଘେନ
ଜୀବନଗଲେ ଦେଖିବ କୁରଙ୍ଗୀ-ନୟନୀ । ୮ ।

ଝର ଝର ନୟନରୁ ବହୁଅଛି ନୀର
ଝସକେତୁ-ଶର-ଘାତେ ଅବଶ ଶରୀର ।
ଝୁରଇ ପରାଣ ଗୁଣି ଦ୍ରୁମୁଖୀ-ସେନେହ
ଝାସିବ ଅନଳେ ନିଶ୍ଚେ ଛାଡ଼ିବ ମୋ ଦେହ । ୯ ।

ନଳିନୀ-ନୟନ-ମୁଖୀ ନ ଦେଖି ମୋ ମନ
ନ ସହଇ ସୁଶୀତଳ ସୁଭନ ପବନ
ନିଶି ନିମିଷକ ନବ କୋଟି ଯୁଗ ସମ
ନେବ ଜୀବ ବୋଲି ପ୍ରେ ବଶୃରୁଅଛି କାମ ।୧୦।

ଝେଷ ଝେଷ ଭସ୍ମହ୍ନନ ହିମାଧର ଜ୍ୟୋଛ
ଝଲବ ତା ଦେଖି ମୃନ ଜନଙ୍କର ମଛ
ଝାଣ ମନସିଜ ଶରେ ଅଥିର ମୋ ତନୁ
ଝଲବ ଜୀବନ ଶଶୀମୁଖୀ ରାଧା ବିନୁ । ୧୧ ।

ଠୁଳ କରି ସକଳ ଲାବଣ୍ୟ ଅଣି ଧାତା
କଠିନା କରି ନିର୍ମିଣିଲା ସୁନ୍ଦର ଅଙ୍ଗ ତା
ଠଣ ସରସିଜ ମୁଖ ନ ଦେଖିଲି ଦିନୁ
ଠିକେ ବିଷମ ବିଶିଖ ଦହଇ ମୋ ତନୁ । ୧୨ ।

ଡମ୍ବକ ହେମବରଣୀ ନୟନେ ନ ଦେଖି
ଡଙ୍କଧର ରପୁବାଣେ ହୋଇଲି ମୁଁ ଦୁଖୀ
ଡୋଳେ ଯେଉଁ ବନ ମୁଁ ଦେଖିବି ତାର ମୁଖ
ଡେଇଲାଇବ ମନେ ମୋର ଅଛି ଯେତେ ଦୁଃଖ ।୧୩

ଢାଳେ ହେ ସୁମୁଖୀ ମୁଖ ନ ଦେଖିବ ଯେବେ
ଢମ କହୁନାହିଁ ପ୍ରାଣ ଯେଜିବ ମୁଁ ତେବେ
ଢମାଳ ବୋଲିଣ ସ୍ୱମା ବୋଲିଅଛି ଯାହା
ଢାଳେହେଁ ନର ହେ ଜୀବ ସୁମରିଲେ ତାହା । ୧୪ ।

ଅମଳ କମଳ ନେତ୍ର ନ ଦେଖି ତାହାର
।ଅଣଅପୃତ୍ତ ହେଇଲା ଏ ମୋର ଶରୀର

ଅତନୁ ଅନଳ ମୋର ଦହୁଅଛି ଦେହ
ଅବଶ୍ୟ ତେଜିବ ଜୀବ ନ ଦେଖିଲେ ସହି । ୧୫ ।

ତାହାର ଅଧରୁ ମଧୁ ଯେ କରିବ ପାନ
ତ୍ରିଦଶ ସୁନ୍ଦରୀରେ ତା ନ ରହିବ ମନ
ତରୁଣୀ ରତନ ରାଧା ନ ଦେଖିବ ଯେବେ
ତ୍ରିଭୁବନ ପଞ୍ଚ ପଣ ନ ଯୋଗାଇ ଦେବେ । ୧୬ ।

ଥିର ହୋଇ ସଂସାର ରଚନା ଛାଡ଼ି ବନ୍ଧ
ଥିରେ ବସି ବହୁ ଯୁଗେ ନର୍ମୀଙ୍କ ବହି
ଥଳ ସରସିଜ ତାର ଶ୍ରୀଚରଣ ବେନି
ଥିଲାକାଳେ ନିରନ୍ତରେ ହୃଦେ ଥାଇ ଧେନି । ୧୭ ।

ଦାରୁଣ ଦଇବ ଦୁଃଖ ଦେଲା ଏତେ ଦିନେ
ଦୀନ ହୋଇଅଛି ମୁହିଁ ସଖୀତ ବିହୁନେ
ଦଇନ୍ୟ କରୁଛି ଶୁଣ ଏ ମୋର ବଚନ
ଦେଖାଅ କମଳମୁଖୀ ରଖ ମୋ ଜୀବନ । ୧୮ ।

ଧଇର୍ଯ୍ୟ ମୋ ଧସୁଅଛି କୁସୁମ ବିଶିଖ
ଧରିଅଛି ଜୀବ ତା ଚରଣ ପଦ୍ମମୁଖ
ଧରି କୋଳେ ସଖୀ ମୋତେ ବୋଲୁଅଛ ଯାହା
ଧରିବ ଜୀବନ କାହ୍ନୁଁ ପାସୋରିଲେ ତାହା । ୧୯ ।

ନିରନ୍ତରେ ମନସିଜ କରଇ ପ୍ରହାର
ନ ଦେଖିଲି ହିନ୍ ଚନ୍ଦ୍ର ବଦନ ତାହାର
ନ କରି ବିଳମ୍ବ ମିତ ଯାଅ ବେଗ ହୋଇ
ନିମିଷେ ତା ବିନୁ ମୋର ଜୀବ ନ ରହଇ । ୨୦ ।

ପଞ୍ଚଶର ଘାତ ଅଉ ନ ସହିବ ଦେହ
ପାରଲେ ଉତ୍ତର ବାରେ ଦେନ ଆସ ଯାଇଁ
ପରଭୃତ ବଚନୀକ ଦେଖିବା ମୁଁ ଯେବେ
ପାପିଷ୍ଠ ମଦନ ଭସ୍ମ ଦେଙ୍କବ ମୁଁ ଦେବେ ।୨୧।

ଫୁରୁଣା ହୋଇଣ ଶଶୀମୁଖୀ ସଖୀ ସଙ୍ଗେ
ଫାଇ କାଲ କେଳେ ମୁ ରମିଲି ନାନାରଙ୍ଗେ
ଫାଟଇ ହୃଦୟ ମୋର ପଡ଼ିଲେ ସେ ମାନ
ଫାନ୍ଦରେ ପଡ଼ିଲେ ଶିଶୁ କୁରଙ୍ଗ ଯେସନ ।୨୨।

ବିଳମ୍ବ ନ କର ମିତ ଚଳଧି ବନ୍ଧନ
ବିଧୁମୁଖୀ ଆଗେ ମୋର କହ ନିବେଦନ
ବିକଳ ହୋଇଛି ମନ ତା ମୁଖ ନ ଦେଖି
ବିନଢ କରଣ ମୋର ଆଣ ପ୍ରାଣସଖୀ ।୨୩।

ଭୁଜେ ଭୁଜେ ଭିଡ଼ି ମୋତେ କୁରଙ୍ଗ-ଶାବାକ୍ଷି
ଭବନରେ ଯେତେକ ବଚନ କହିଅଛି ।
ଭୁଲିଅଛି ରଜନୀ ଦିବସେ ବସି ତାହା
ଭେଦିଲା ମରମେ ମୋର ଗାଢ଼େ ରଚନାହା ।୨୪।

ମାଳତୀ ନ ପାଇ ଯେସନେ ମଧୁକର ଦୁଃଖୀ
ମୋର ମନ ତେସନ ନ ପାଇ ଶଶୀମୁଖୀ
+ + + +
+ + + + ।୨୫।

+ + + +
+ + + +

ଯାର ବିନ୍ କ୍ଷଣେହେ ନ ରହେ ମୋର ତନ୍
ଯୁଗ ଜାଣେ ଯାପେ ନିମିଷ ଅନୁମାନ । ୨୬ ।

ରସାଣେଲ୍ଲି କନକ ସମାନ ତାର କାନ୍ତି
ରମ୍ଭାଶ୍ରୀ-ନାଥଙ୍କୁ ନିନ୍ଦ କରେ ମୁଖ-ଭ୍ରାନ୍ତି
ରତି ପତି ଚାପ ଜିଣି ଭ୍ରୂଯୁଗ ଶୋହେ
ରମଣୀ ରତନ ରାଧା ମୁନି ମନ ମୋହେ । ୨୭ ।

ଲଳନା ରତନ ଦିନେ ଲତାନ୍ତରେ ଯାଇଁ
ଲୁଚିଲ୍ଲ ମୋହର ମନ ଜାଣିବାର ପାଇଁ
ଲୋଡ଼ି ଲୋଡ଼ି ରୋଦନ ମୁଁ କଲି ଯେତେବେଳେ
ଲାଜ ତେଜି ଶଶୀ ମୁଖୀ ଧରି ମୋତେ କୋଳେ ॥

ବୃନ୍ଦାବନେ ବିପୁଲଜଘନୀ ଏକ ଦିନ
ବିବିଧ ବିଳାସ ରସେ ତୋଷିଲା ମୋ ମନ
ବସାଇ ଯାନୁରେ ରାମା ଯାଚିବା ବୋଲୁଅଛି
ବିଶ୍ବରି ସେ କଥା ମୋର ଜୀବନ ଯାଉଛି । ୨୯ ।

ସରସିଜ ପତ୍ର ମୁଖୀ ବଚନ ମାଧୁରୀ
ସୁମରଣ ଶରୀର ମୋ ହୋଉଛି ବିଦାରି
ସମସ୍ତ ବଚନ ତୋତେ କହୁଅଛି ମିତ
ଶଶୀ ମୁଖୀ ବିନୁ ପ୍ରାଣ ତେଜିବି ନିଶ୍ଚିତ । ୩୦ ।

ସରୋଜ ନୟନା ସଙ୍ଗ ତେଜିଲିଣି ଦିନୁ
ସେହି ଯେ ବିରହ ଜ୍ୱରେ ଦହୁଛି ମୋ ତନୁ
ସୁମୁଖୀ ସେବନ ଦିମାନ ସୁମରି ମନରେ
ସତତ କୁସୁମଶର ପଶୁଇ ଅନ୍ତରେ । ୩୧ ।

ଶୁଣ ଶୁଣ ମିତ୍ର ତୁ ଯେ ମୋହର ବଚନ
ସରସିଜ ମୁଖୀ ପ୍ରାଣ କରସି ଗମନ
ସଖୀର ଅଗରେ ମୋର କହଯାଇଁ ବାଣୀ
ସତ୍ୟ ହେ ନିର୍ଦ୍ଦୟା ମୋତେ ନ କଲୁ ତରୁଣୀ ॥

ହରର ବଚନ ଶୁଣି ଉଦ୍ଧବ ହରଷ
ହୋଇଣ ବାହାର ବେଗେ ଗୋପରେ ପ୍ରବେଶ
ହରିଣନୟନୀ ରାଧା ନିକଟକୁ ଯାଇ
ହରଷେ ହରି ସନ୍ଦେଶ କହନ୍ତି ମଣାଇଁ । ୬୩ ।

କ୍ଷେତ୍ରବର ନୀଳାଦ୍ରି-ନାୟକ ଦୀନବନ୍ଧୁ
କ୍ଷମାଶୀଳ ଶରଣ-ରକ୍ଷଣ କୃପାସିନ୍ଧୁ
କ୍ଷୀରାବ୍ଧି-ନନ୍ଦନୀ-ପତି କୁଟର ଚରଣ
କ୍ଷଣକେ ଗୋକୁଳ ଚନ୍ଦ୍ର ପଶିଲା ଶରଣ । ୬୪ ।



# ଚନ୍ଦ୍ରାବଳୀ ଚଉତିଶା

ଚନ୍ଦ୍ରାବଳୀ ଚଉତିଶା ଛଡ଼ା କବି ଭ୍ରମରବର ରଚନାର ଅନ୍ୟ କୃତି ମିଳୁନାହିଁ । କିନ୍ତୁ ଏହି କ୍ଷୁଦ୍ର କବିତା ଦ୍ୱାରାହିଁ ସେ ଅମର ହୋଇ ରହିବେ । ତାଙ୍କର ଭାଷା ଓ ଭାବପ୍ରକାଶ ଭଙ୍ଗୀ ଉପରେ ପ୍ରାଚୀନତାର ସ୍ପଷ୍ଟ ମୁଦ୍ରା ଅଙ୍କିତ ରହିଅଛି । ସାରଲ୍ୟ ତାଙ୍କର ନିଜସ୍ୱ । ସାରଲ୍ୟ ଭିତରେ ଓଡ଼ିଆ ଭାଷାର ଯେଉଁ ମୌଳିକ ଶକ୍ତିର ବିକାଶ ଘଟିଅଛି ତାହା ଆଧୁନିକ ଯୁଗର ଯଶକାମୀ କବିମାନଙ୍କର ଅବଶ୍ୟ ମନୋନିବେଶ ପର୍ଯ୍ୟବେକ୍ଷଣର ବିଷୟ ।

କୃଷ୍ଣ ଗୁଣି ଗୁଣି ଚନ୍ଦ୍ରାବଳୀ
କରେ ଚିନ୍ତା, ସବୁ ଗୋପୀ ମେଳି,
କହିଗଲେ କୃଷ୍ଣ ଆସିବେ ବୋଲିଣ
କିପାଇଁ ନଇଲେ କଥା ଭୁଲି । ୧ ।

ଖଳ ଲୋକଙ୍କ ପରି ପ୍ରେମ ହୋଇ
ଖଣ୍ଡିଲେ ଏ ସୁଖ କାହିଁପାଇଁ ?
ଖିଆଇ ପ୍ରେମ-ମଧୁରୀ-ରସଇଁ
ପାସୋରିଲେ ମଧୁ ପୁରରେ ରହି । ୨

ଗୁଣମଣି ଗୁଣ ମନେ ଧ୍ୟାଇ
ଗଲାଦିନୁ ଦିନ ସରୁନାହିଁ
ଗୁପତପ୍ରୀତି ସୁରତି ରସ ଯେତେ
ହୃଦରେ ପଡ଼ିଲେ ହାଣିହୋଇ । ୩ ।

ଘଡ଼ିଏ ଶ୍ରୀମୁଖ ନ ଦେଖିଲେ
ଘଡ଼ିଏ ମୂରୁଛି ନୋହେ ଭଲେ

ଘନଶାମଳଅ ସଙ୍ଗେ ଯେତେ ପ୍ରୀତି
ମୂରୁଛୁ କେ ପିଣ୍ଡେ ପ୍ରାଣ ଥିଲେ ! ।୪।

ନଥିବ ଏମନ୍ତ ହୋଇ କାହିଁ
ନଂନ-ଧନଅ ପ୍ରାପ୍ୟେ ହୋଇ
ନୟନେ ଠାର ନାଗରୀ ନାରୀଙ୍କର
ମନକୁ ଓଟାର ବଳେ ନେଇ । ୫ ।

ଚତୁର—ଶେଖର-ବର କାହ୍ନ
ଚତୁରୀ-ଚାତକ-ନବଘନ
ଚନ୍ତା-ସାଗରେ ଭସାଇ ଦେଇଯାଇଁ
ନଇଲେ ଜୀବର ଜୀବଧନ । ୬ ।

ଛନ୍ଦ-ଶିରୋମଣି ପ୍ରଭୁ ହୋଇ ।
ଛାଡ଼ିଲେ ଏ ସୁଖ କାହିଁପାଇଁ ?
ଛାର କରମ ଏଡ଼େ ହୀନ ଅମ୍ଭର ।
ଦେଇ ଧନ ବହି ନେଲ ଫେଇ । ୭ ।

ଜାଣିଥିଲୁଁ ଜୀବ ଯିବା ଯାଏଁ ।
ଯିବେ ନାହିଁ ଥିବେ ଯଦୁରାୟେ ।
ଜାଣିଲୁଁ ଏତେ ନିର୍ଦ୍ଦୟ ବୋଲକର ।
ପାଷାଣୁଁ କଠିନ ତାଙ୍କ କାୟେ । ୮ ।

ଝୁଲଥିଲ ମନ ତାଙ୍କ ତହିଁ ।
ଝିମଣ୍ଡେ ଅନ୍ତର ନାହିଁ ସହି ।
ଝୀନବସନା ଅମ୍ଭେ, ଏଡ଼େ ଦାରୁଣ,
ରହିଲେ ନିର୍ମାଣି କଇଯାଇଁ । ୯ ।

ଜାରନ୍ତରେ ପ୍ରୀତି ମନେ ଥାଇ ।
ଜାମିଷେ ନୟନେ ନିଦ୍ରା ନାହିଁ
ନ ପଡ଼ିଲୁଁ ମନେ ମାପମୂଳଅାର ।
ଜର୍ମାଙ୍ଗୀ କର ବନ୍ଧିଲେ ଯାଇଁ । ୧୦ ।

ଝେଙ୍କଣ୍ଡନାଳଅ ଚକ୍ରପାଣି ।
ଝମାଲେ କେ ତାଙ୍କୁ ପାରେ ଜାଣି ?
ଝାଙ୍କଥାଉ ତାଙ୍କ ଗୋଧନ-ବାହୁଡ଼ା
ଲେଉଟି ଅସିବା ବେଳ ଜାଣି । ୧୧ ।

ଠିକେ ସେନେଷ୍ଟ ଲଗାଇଥିଲେ ।
ଠକପଣ ପ୍ରଭୁ କଂପାଁ କଲେ
ଠିକେଣ ଭ୍ରମରବର ସ୍ୱପ୍ନ କହେ ।
ଜଳ ଠାବ ଦେଖି ଭଣ୍ଡି ଗଲେ । ୧୨ ।

ଡଙ୍କ ଲାଗିଲା ପ୍ରାଟ୍ୟକ ହୋଇ
ଡଳ୍ପଡଳ୍ପ ଅଙ୍ଗେ ପ୍ରାଣସହି !
ଡକା କଲ ତାଙ୍କ ପରୁବ ପୀରତି ।
ତା ବିନ୍ଦୁ ନ ଜାଣେ ଅନ କେହି ।

ଢମିଅ ପୁରୁଷ ରୂପ ଦେଖି ।
ଢାଳ ନୋହେ ଅଛି ରହେ ଲାଖି ।
ଢମପଣ ଛାଡ଼ ତନୁ ଜର ଜର ।
କେ ପାରବ ପେଣ୍ଡେ ପ୍ରାଣ ରଖି ? ।୧୪।

ଅଣହେଲା କରି ଗଲେ ହରି ।
ଅଣ କରିଥିଲ ବଡ଼ କରି ।

ଅଦୋଷେ ଦଣ୍ଡିଣ କପାଇଁ ନଇଲେ
କଉଁ ଦୋଷ ପ୍ରଭୁ ମନେ ଧର ।୧୫।

ତ୍ରିଭଙ୍ଗିମା ରୂପ ଦେଖି ତାର ।
ତରଳ ହେବ ହେଲେ ପଥର
ତସ୍ୱ ଛାର ଦିନା କେତେକ ମାତର
ତରଳ ନୋହିବ କଉଁ ନର । ୧୬ ।

ଥିବ ନାହିଁ ଆଉ ତନ ସ୍ଥୂଳ
ଥୋଇଥିଲା ବିହି ଯତ୍ନକର
ଥୋଇଲା ଧନ କେ ଫେଇ ଦେନିଗଲା
ଅନାସ୍ଥ କଉଣ ଏତେ ନାସ୍ତି । ୧୭ ।

ଦୁଃଖୀ ଲୋକଙ୍କର ବନ୍ଧୁ ହୋଇ
ଦୁଖ ବହିବା ଶହି ତ ନୋହି
ଦେଖୁ ଦେଖୁ ଏବେ ଯାଉଛି ପରାଣ
ଦୟା ନ ବହିଲ କାହିଁ ପାଇଁ । ୧୮ ।

ଧନ ଜନ ପଞ୍ଚ ସୁତ ଏଡ଼ି
ଧରିଥିଲୁଁ କୋଳେ ହର ଘଡ଼ି
ଧଇର୍ଯ୍ୟ ପଣ ସଙ୍ଗତେ ଘେନଚଲେ
ପିଣ୍ଡୁ ଯାଉଅଛି ପ୍ରାଣ ଛାଡ଼ି । ୧୯ ।

ନବରେ ତହିଁ ନାଗରୀ ନାରୀ
ନୂଆଭାବ ଦେଇ ବଶକର
ନାନା ରସରେ ଭସାଇଲେ ତାହାଙ୍କୁ
ପାସୋରିଲେ ରହି ମଧୁପୁରୀ । ୨୦ ।

ପୁରୁଷ ରତନ ଶିଖିରଙ୍ଗ
ପୁରରେ ତହୁଁ ନାଗରୀ ସଙ୍ଗ
ପୂରୁବ ପୀରତି ତେଜି ଏବେ ମଜି
ରହିଲେ କରି ପୀରତି ସଙ୍ଗ । ୨୧ ।

ଫାଇ ସୁଖ ପାଇଁ ତାଙ୍କୁ ମଜି
ଫୁରୁଣା ହୋଇଣ ଥିଲୁଁ ଭଜି
ଫାନ୍ଦ କରି ତାଙ୍କ ସେନେହ ଦଉଡ଼ି
ଗଳାରେ ଲଗାଇ ଗଲେ ଛନ୍ଦି । ୨୨

ବହୁତ ପାତକୀ ଏତେ ନାରୀ
ବହୁ ଦଣ୍ଡ ଅଛୁ ଏଣୁ କରି
ବନମାଳୀ ପ୍ରୀତି ଛାଡି କିଂପାଁ ପ୍ରାଣ
ନ ଯାଇ ରହୁଛୁ ଯମପୁରୀ ? । ୨୩ ।

ଭାବର ବନ୍ଧୁ ବୋଲନ୍ତି ହରି,
ଭାବକଙ୍କୁ କଷ୍ଟ ଏତେ ସରି ?
ଭ୍ରାନ୍ତି କରି ଭ୍ରମରବର କହେ
ଭାବିଲେ ଏ ଦୁଃଖ ହେବ ପାର । ୨୪ ।

ମନ-ମୋହନଙ୍କ ପ୍ରଭୁ ଭଲ
ମାତ୍ର ଦୁଷ୍ଟ ସନ୍ଥ ପାଳୁଥିଲ
ମନେ ନ ପଡିଲୁଁ ମାପମୂଳଅର
ଅନାସ୍ତ୍ର କରିଣ ଛାଡିଗଲ । ୨୫ ।

ଯାର ଲାଗି ଅମ୍ଭେ ଏତେ ପର
ଜାଣିଥିଲୁଁ ଅମ୍ଭେ ବଡ଼କର

ଜଗତ ଯାକ ଜାଣନ୍ତୁ ଜଗବନ୍ଧୁ
ଲାଗି ପ୍ରାଣ ଦେଲେ ବ୍ରଜନାରୀ । ୧୬ ।

ଡହିଅରସ କି ମନୁ ଯିବ
ଡହୁ ଯେବେ ଦନ ପ୍ରାଣ ଥିବ
ଡହୁ ନ ଥାନ୍ତା ଜୀବନ ଅନ୍ତ ଯାଏଁ
ଡୃଠାର ରଖିଛୁ ତାଙ୍କ ଭାବ । ୧୭ ।

ଲାବନ୍ୟନଧି ଶ୍ୟାମଙ୍କୁ ଲେଖ
ଲିହୁ ଦେବା ଅମ୍ଭେ ଯେତେ ଦୁଖ
ଲେଖ ଲେଉଟା ନରେଶ ବାଣୀ ଶୁଣି
ସୁମର ତେଜବ ପଦ୍ମମୁଖ । ୧୮ ।

ବିଦ୍ରୂପ ହୋଇଣ ଏବେ ନାରୀ
ବିଷାଦ ମନେ ବଚନ ଫୁର
ବିଳମ୍ବ ନ କର ଚଲ ମଧୁପୁରୀ
କୃଷ୍ଣଙ୍କୁ ଆଣିମ ଦସ୍ତୁଧର । ୧୯ ।

ଶ୍ରୀବନ୍ତ ସୁନରୀ କହେ ରାଧା
ସହୁ ନ ପାରଇ କାମ ବାଧା
ସତ୍ୱର କର ଦୂତକା କହୁଅଛୁ
ଶ୍ରୀକୃଷ୍ଣ ପ୍ରାଣ ଅଟନ୍ତ୍ର ରାଧା । ୨୦ ।

ଶ୍ୟାମସୁନ୍ଦରଙ୍କୁ ଯେତେବେଳେ
ସମସ୍ତେ ହୋଇ ଆଣିବା ବଳେ
ମଥୁରା ନଗର ନାରୀ ସୁହୁଁ ଥିବେ
କଥା କହିଥିବ କାଳେ କାଳେ ।୨୧।

ଶରଦଚନ୍ଦ୍ରବଦନୀ ସଖି
ଷଶୀ-ମୁଖୀ ଦୂତୀ ଆଗେ କହି
ଶ୍ରୀକୃଷ୍ଣ ଏବେ ଦହି ଦୁଧ ଲବଣୀ
ଘରେ ଘରେ ପଶି ଚୋରି ଖାଇ ।୩୨।

ହରିନାମ ପଦ ହୃଦେ ଧର
ହରିଙ୍କି ପାଇଲେ ହନୁଗାର
ହଂସ ଚଢ଼ାଇ ଶୂନ୍ୟରେ ଯାଉଅଛୁ
ପଙ୍କରେ ଯେସନ ପଦ୍ମଫୁଲ ।୩୩।

ଯଦୁ ଶିରୋମଣି ପ୍ରଭୁ ମୋର !
ଝଟପେ ଯାଉ ପାପ ଦୂରାନ୍ତର ।
ଛାଡ଼ି ଦେଲେ ସିନା ଛାମୁରେ କହିବ
ବୋଲଇ ଭ୍ରମର ଯୋଡ଼ିକର ।୩୪।



# କାଦମ୍ବିନୀ ଚଉତିଶା

ଏହି ମନୋହର ଚଉତିଶାର ଭଣିତା ପଦର ଶେଷପାଦ ନାହିଁ । ତେଣୁ ଅନ୍ୟ ତାଳପତ୍ର ପୋଥି ପାଇବା ପର୍ଯ୍ୟନ୍ତ ଏଡ଼େ ସିଦ୍ଧହସ୍ତ କବି କିଏ ଜାଣିବା ନିମନ୍ତେ ଅପେକ୍ଷା କରିବାକୁ ହେବ । କୁଶଳହସ୍ତ ଯାଦୁକରବତ୍ କବି ଭାଷା ଭାବ ଓ ଛନ୍ଦର ସମନ୍ୱୟରେ ଏଡ଼େ ଚମତ୍କାର ଇନ୍ଦ୍ରଜାଲ ସୃଷ୍ଟି କରିଅଛନ୍ତି, ଯାହାର ମନ ଉପରେ ପ୍ରଭାବ, ବର୍ଣ୍ଣନା କରିବାର ଜିନିଷ ନୁହେଁ, ଅନୁଭବର ଜିନିଷ । ଓଡ଼ିଆ ସାହିତ୍ୟରେ କାଦମ୍ବିନୀ ଚଉତିଶା ତୁଳନା ପ୍ରାଣବନ୍ତ ପ୍ରେମ କବିତାର ସଂଖ୍ୟା କଦାପି ଅତିବେଶୀ ନୁହେଁ ।

କୃଷ୍ଣ କଂସପୁରେ ରହି
କହନ୍ତି କାଳିକା-ଉଦୟେ ଚାହିଁ
ରେ କାଦମ୍ବିନି !
କି କରୁଥିବ ମୋ ସଖୀ ?
ରେ କାଦମ୍ବିନି !। ୧ ।

ଖୀରୋଦଶ୍ରୀ ମୋହ ବନୁ
ଖୀଣ କରୁଥିବ ଅମୂଲ୍ୟ ତନୁ
ରେ କାଦମ୍ବିନି !
ଖୀଣି ହୋଇ ଦିନୁ ଦିନୁ
ରେ କାଦମ୍ବିନି !। ୨ ।

ଗଗନେ ତୋ ଶୋଭା ଚାହିଁ
ଗଳାରେ ମୋହର ଗଲା ମିଳାଇ
ରେ କାଦମ୍ବିନି !

କନ୍ଦଇ କେତେ ଗେଲ୍ହଇ
ରେ କାଦମ୍ବିନି ! । ୩ ।

ଘନ ପୀନ ପୟୋଧରୀ
ଘଡ଼ି ଘଡ଼ିକେ ତା ଭିଜବ ସୁନ୍ଦର
ରେ କାଦମ୍ବିନି !
ହୃଦୟ ହୋଏ ବିଦାର
ରେ କାଦମ୍ବିନି ! । ୪ ।

ନବୀନ ରଙ୍ଗ ରସରେ
ନାହିଁ ନାହିଁ ନାହିଁ ନାହିଁ ଯା କରେ
ରେ କାଦମ୍ବିନି !
ନାହିଁ ନାହିଁ ଭନପୁରେ
ରେ କାଦମ୍ବିନି ! । ୫ ।

ଶିତାଇବ କଉଁ ସୁଖ
ଚୁମ୍ବୁଥିଲେ ଚୁମ୍ବୁଥାଇ ମୋ ମୁଖ
ରେ କାଦମ୍ବିନି !
ତାଙ୍କୁ ଦେଲି ଏତେ ଦୁଖ
ରେ କାଦମ୍ବିନି ! । ୬ ।

ଛଇଳାମଣି ନରସ୍ପେ
ଘଡ଼ ଦ୍ୱାରରେ ପନ୍ତୁଡ଼େ ରସେ
ରେ କାଦମ୍ବିନି !
ବିପଞ୍ଚିତ ରଙ୍ଗ ଶେଷେ
ରେ କାଦମ୍ବିନି ! । ୭ ।

ଜଳଦ ଘୋର ଗର୍ଜନ
ଝାଣ୍ମଣି ଶୁଣି ହୃଦ ଉଚ୍ଛନ
ରେ କାଦମ୍ବିନି !
ମୋ ସଙ୍ଗେ ହୋଅଛ ଲୀନ
ରେ କାଦମ୍ବିନି !। ୮ ।

ଝଷ କେତନ ସମରେ
ଝିଲି-ଗୋଷ୍ଠୀ ବଳା ଝମଟିବାରେ ।
ରେ କାଦମ୍ବିନି !
କାମକୁ କାତର କରେ
ରେ କାଦମ୍ବିନି !। ୯ ।

ନଡନ୍ତୁ ଭସ୍ମ ଛଡ଼ାନ୍ତ
ନର୍ତ୍ତନା କଳାମେଘୀ-ଶାଢ଼ୀ-ଶାବ
ରେ କାଦମ୍ବିନି !
ସତେ ମୁଁ ଥରେ ଫେଡ଼ିବ ?
ରେ କାଦମ୍ବିନି !। ୧୦ ।

ଠେକସ୍ତନା ରଭ ସଜ
ଟିକାଏ ମନରୁ ନ ଗଣ୍ଟ ଅଜ ।
ରେ କାଦମ୍ବିନି !
ସେ ଦୃଶ୍ୟ ଜାଣେ ମନୋଜ
ରେ କାଦମ୍ବିନି !। ୧୧ ।

ଠୂଳ ଗୃରୁ ଚନ୍ଦ୍ରମୁଖୀଁ
ଠାଉ ମନେ ଯାହା ଅଛି ସେ କହ

ରେ କାଦମ୍ବିନ !
ସେ ସୁଖ ସଂସାରେ କାହିଁ
ରେ କାଦମ୍ବିନ !। ୧୨ ।
ଡାହୁକ ଡାକ ଡମ୍ବରେ
ଡମ୍ବରୁ-ମଧ୍ୟା କାମ ଅନ୍ଧ ଓଷ୍ଠା ରେ
ରେ କାଦମ୍ବିନ !
ଢ ସୁଖ ଜାତ ନ କରେ
ରେ କାଦମ୍ବିନ !। ୧୩ ।
ଢମ୍ପ ପଣ ମୁହିଁ କଲି
ଢାଲେଣ୍ଟେଁ ଧନଙ୍କୁ ଖୁଡ଼ି ଅଛଲି
ରେ କାଦମ୍ବିନ !
ଆଣ୍ଟା ଏଣ୍ଟା ସେ ଅର୍ଜିଲି
ରେ କାଦମ୍ବିନ !। ୧୪ ।
ଅନଙ୍ଗ ଶର ବଶରେ
ଅତନୁ ସୁଖୀ ତଳ ଅପସରେ
ରେ କାଦମ୍ବିନ !
ପଡ଼ିଥିବ ଅବଶରେ
ରେ କାଦମ୍ବିନ !। ୧୫ ।
ତରୁଣୀମଣି ସୁରତ
ତାରତମ କଲେ ଇନ୍ଦ୍ର ସମ୍ପତ୍ତି
ରେ କାଦମ୍ବିନ !
ହେବ ତଳାତଳ ଗତ
ରେ କାଦମ୍ବିନ !। ୧୬ ।

ଥରେହେଁ ନୋହେ ମୁଣ୍ଟୁଛି
ଥାଉ ଯା ଥାଉ ଯା ବୋଲି ବୋଲୁଛି
ରେ କାଦମ୍ବିନି !
ନୀବି ଫେଡ଼ନ୍ତେ ମୃଗାକ୍ଷୀ
ରେ କାଦମ୍ବିନି ! । ୧୭ ।

ଦାରୁଣ ଫୁଲ କୋଦଣ୍ଡ
ଦୂର କର ଦୟା ଦଣ୍ଡରୁ ଦଣ୍ଡ
ରେ କାଦମ୍ବିନି !
ଦଣ୍ଡୁଥିବ ତାର ପିଣ୍ଡ
ରେ କାଦମ୍ବିନି ! । ୧୮ ।

ଧନକୁ ଯାମିନୀ ଶେଷେ
ଧଇଲେ ଧୀରେ ମୁଁ ସୁରତ ଆଶେ
ରେ କାଦମ୍ବିନି !
ନାହିଁ ନାହିଁ କର ହସେ
ରେ କାଦମ୍ବିନି ! । ୧୯ ।

ନିର୍ମଳ ଚନ୍ଦ୍ର କିରଣେ
ନିତମ୍ବିନୀ ଯେନ ଚନ୍ଦ୍ର ପ୍ରାଙ୍ଗଣେ
ରେ କାଦମ୍ବିନି !
ମାତିଲେ ମଦନ ରଣେ
ରେ କାଦମ୍ବିନି ! । ୨୦ ।

ପୃଥୁଳ ନିତମ୍ବବତୀ
ପୀନ ପୟୋଧରୀ ଶିତ ଅଶ୍ୱତ

ରେ କାଦମ୍ବିନି !
ମଣୁଥିବ ନିତି ପ୍ରୀତି
ରେ କାଦମ୍ବିନି ! । ୨୧ ।
ଫାଇ ଘନାଘନ ଗୁହିଁ
ଫୁରୁଣାରେ ଗଣ୍ଡେ ରୋମ ଫୁଲାଇ
ରେ କାଦମ୍ବିନି !
ଆସେ ରଙ୍ଗସଜ ହୋଇ
ରେ କାଦମ୍ବିନି ! । ୨୪ ।

ବିପୁଳ କୁଚରେ ହାର
ବସାଇଲେ ଭୀଷ୍ମ କରଜଗାର
ରେ କାଦମ୍ବିନି !
ମଦନେ ହୋଏ କାତର
ରେ କାଦମ୍ବିନି ! । ୨୩ ।

ଭାବବତୀ ସୁଖରାଶି
ଭାଳୁଥିବ ଗଣ୍ଡେ କର ନିବେଶି
ରେ କାଦମ୍ବିନି !
ମୋହ ଗୁଣି ଅହର୍ନିଶି
ରେ କାଦମ୍ବିନି ! । ୨୪ ।

ମେଘେ ବିଜୁଳି ଝଟକ
ମଦାଳସୀ ଗୁହିଁ ଲଭିବ ଦକ
ରେ କାଦମ୍ବିନି !
ହରାଉଥିବ ବିବେକ
ରେ କାଦମ୍ବିନି ! । ୨୫ ।

ଯୋଷି ବନ୍ଧୁଥିବ କାମ
ଜପୁ ଜପୁ ଗୋଷ୍ଠୀ ଯୋଗୀନ୍ଦ୍ର ନାମ
ରେ କାଦମ୍ବିନି !
ଯାଉଥିବ ବସି ଧାମ
ରେ କାଦମ୍ବିନି ! । ୧୬ ।

ରଖିବ କି କର ଜୀବ
ରମଣୀରଞ୍ଜନ ଭାବ ମୋ ଭାବ ?
ରେ କାଦମ୍ବିନି !
କି କଲା ଅନ୍ଧା ଦଇବ !
ରେ କାଦମ୍ବିନି ! । ୧୭ ।

ଲେଶେ ମୁଁ ହେଲେ ଅନ୍ତର
ଲେଖଇ ପଟେ ସ୍ୱରୂପ ମୋହର
ରେ କାଦମ୍ବିନି !
ଏବେ ହେଲା ଏତେ ଦୂର
ରେ କାଦମ୍ବିନି ! । ୧୮ ।

ବିକଚ ଫୁଲ କଦମ୍ବ
ବିଲୋକନ କର ରସକଦମ୍ବ
ରେ କାଦମ୍ବିନି !
ନ କରିବ ବିଳମ୍ବ
ରେ କାଦମ୍ବିନି ! । ୧୯ ।

ଶୁଣି ଏ ମୟୂର ରଡ଼ି
ସୁମନସି ଯାଉଥାଇ ଅଙ୍ଗେ ଜଡ଼ି

ରେ କାଦମ୍ବିନୀ !
ଏବେ ଯିବ ଛାଡ଼ି ନାଡ଼ି
ରେ କାଦମ୍ବିନି !। ୩୦ ।

ସୁବେଶ ହୋଇ ସୁକେଶୀ
ସଙ୍କେତ ଥାନେ ଯେ ମିଳଇ ଆସି
ରେ କାଦମ୍ବିନି !
ମନ୍ଦ ମନ୍ଦ ହୋଇ ହସି
ରେ କାଦମ୍ବିନି !। ୩୧ ।

ଶୁଅଇ ନାହିଁ ପାଲଙ୍କି
ଶାଳୂକରେ ଭଡ଼ିଥାଇ ବମ୍ବୋଷ୍ଠୀ
ରେ କାଦମ୍ବିନି !
ଚନ୍ଦ୍ର ଯା ହୃଦୟ ଫାଟି
ରେ କାଦମ୍ବିନି !। ୩୨ ।

ହର-ବଇରି ଶରରେ
ହରିଲ ସ୍ନେହେ ଚେତନା କାତରେ
ରେ କାଦମ୍ବିନି !
ପଡ଼ିଥିବ ଅବନୀରେ
ରେ କାଦମ୍ବିନି !। ୩୩ ।

କ୍ଷୀର ବିନ୍ଦୁ ସୁଧା ପଦ୍ମ
ଛଛନ୍ଦରେ ନଣି ଦବସ ଚନ୍ଦ୍ର
ରେ କାଦମ୍ବିନି !

* * * * *

# ଉଦ୍ଧବ ଚଉତିଶା

---

କମନୀୟ ଦୃଷ୍ଟାନ୍ତମାଳା ଯୋଜନପଟୁତା ଓ ମଧୁର ସ୍ୱାଭାବିକତା କାନ୍ତ କବି ଭୂପତିଙ୍କର ବିଶିଷ୍ଟତା । ଉଦ୍ଧବ ଚଉତିଶାରେ ଅମ୍ଭେମାନେ ଏହି ଦୁଇ ଗୁଣର ଉତ୍କର୍ଷହିଁ ଦେଖୁଁ । ଭୂପତିଙ୍କ ଦୃଷ୍ଟାନ୍ତ ଚଉତିଶା ଯଥା ସ୍ଥାନରେ ପ୍ରକାଶିତ ହେବ । ତହିଁରେ ତାଙ୍କ ପ୍ରତିଭାର ସମସ୍ତ ବୈଶିଷ୍ଟ୍ୟ ପ୍ରକଟିତ ହୋଇଅଛି । ଦୀନକୃଷ୍ଣ ଦାସ ଓ କୃଷ୍ଣଦାସଙ୍କ ଉଦ୍ଧବ ଚଉତିଶା ସଙ୍ଗରେ ଭୂପତିଙ୍କ ଉଦ୍ଧବ ଚଉତିଶା ତୁଳନା କଲେ ତିନିଜଣ ବଡ଼ କବିଙ୍କ ମଧ୍ୟରୁ କିଏ କେଉଁ ପ୍ରକାରର ବ୍ୟକ୍ତିତ୍ୱର ବୈଶିଷ୍ଟ୍ୟ ବଜାୟ ରଖି ଏକ କଥା ଭିନ୍ନ ଭିନ୍ନ ରୂପରେ ବର୍ଣ୍ଣନା କରିଅଛନ୍ତି ବୁଝାଯିବ ।

କୃଷ୍ଣଗୁଣ ଶୁଣି ବରଜତରୁଣୀ ଉଦ୍ଧବେ କହନ୍ତି ଏକ
କଳା ଲୋକଙ୍କର ସଙ୍ଗତେ ପୀରତି କଲା ଲୋକେ ଅବିବେକ

ଉଦ୍ଧବ ହେ !

କସ୍ତୁରୀ, ଭୃଙ୍ଗ, କୋକିଳ

କୃଷ୍ଣ, କେଶ, ଫଣୀ, ରାହୁ, ଯମ, ଶନି କାଳିଆ କେଉଁଠା ଭଲ ?
ଖଣ୍ଡ, ଶାକର, ଦୁଧ, ସର ଖୁଆଇ ଖେଳାଉଡ଼ ବଡ଼ କଲୁଁ
ଖଣ୍ଡତପୁଁ ଅମ୍ଭେ କୃଷ୍ଣଫଳ ଲଭି ଭର୍ମା ତରୁ ପ୍ରାଏ ହେଲୁଁ

ଉଦ୍ଧବ ହେ !

ଖୀଣ ହେଲୁ ବଡ଼ କାୟେ

ଖଣ୍ଡପରତେ ପରମାନନ୍ଦ ପ୍ରୀତି ପ୍ରାଣ ରଖିବା ସଂଶୟେ । ୧ ।

ଗରୁଡ଼ଧ୍ୱଜୀ ଗରବେ ଅମ୍ଭେ ଯେ ମତ୍ତସିନ୍ଧୁ ପ୍ରାୟେ ହେଲୁଁ
ଚୋରରୂପ ଗୋବିନ୍ଦ ପ୍ରଭବମ୍ଭ ପ୍ରେମରେ ବୁଡ଼ି ପଡ଼ିଲୁଁ

ଉଦ୍ଧବ ହେ !
ଗତ ମୃତମାତ୍ର ପ୍ରାୟେ
ଚିର ଗହନ ବନ ଲତା ଖୋଜିଣ ନ ଭେଟୁ ମୋହନ ରାୟେ ॥
ଘନାଗତି ବିନ୍ଦୁ ଗୃତକର ଯେସନେ ଅନ୍ୟ ନୀର ନୋହେ ପାନ
ଘନ-ଶ୍ୟାମ ବିନୁ ଘରେ ବା ବାହାରେ ନୟନେ ନ ଦେଖୁ ଆନ
ଉଦ୍ଧବ ହେ !
ଘୋଟିଅଛି ଚଉପାଶେ
ଦର୍ପଣ ମୁକୁରେ ପ୍ରତିବିମ୍ବ ଯେସନେ ଆଲିଙ୍ଗନକୁ ନ ଆସେ । ୪ ।
ଆଖିରୁ ଅନ୍ତର ପ୍ରତିରୂପ ପ୍ରାୟେ ଶ୍ରୀକୃଷ୍ଣ ଅନ୍ତର ହେଲେ
ଅକ୍ଷର ମାତ୍ରା ଅନୁସ୍ୱାର ସହିତେ ପ୍ରେମ ପୁସ୍ତକ ହୋଇଲେ
ଉଦ୍ଧବ ହେ !
ଅନୁଭବ କରୁଁ କରୁଁ
ଆମ୍ଭେ ବା କୃଷ୍ଣ କୃଷ୍ଣ ଆମ୍ଭ ଶରୀର ଦ୍ୱିତୀୟ ଭାବ ପାସୋରୁଁ । ୫ ।
ଚନ୍ଦ୍ରେ କଳଙ୍କ ପରାୟେ ଜାଗିଅଛୁ ଜାଗ୍ରତ ନିଦ୍ରା ସ୍ୱପନେ
ଚେତନା ସମ୍ପଦ ଭୋଗକୁ ନ ଆସେ ଚିତ୍ର ଫଳ ପୁଷ୍ପ ଯେସନେ
ଉଦ୍ଧବ ହେ !
ଗୃହରେ ଘୀର ଭ୍ରମର
ଗୃହ ଚନ୍ଦ୍ରେ ବୋଧ କରି ନ ପାରଇ ଚକୋର ପ୍ରାୟେ ଭ୍ରମର । ୬ ।
ଛନ୍ଦି ଭୁଜ ଭୁଜେ ପ୍ରେମ ଆଲିଙ୍ଗନ ଚୁମ୍ବନ ପାନ ଅଧରୁ
ଛଛନେ କନ୍ଦର୍ପ କୁବେର ଭଣ୍ଡାର ରଚିରହି ଜୁରଙ୍କରୁ
ଉଦ୍ଧବ ହେ !
ଯତ୍ନେ ହେଲେ ଦେଖା ଦେଖି
ଛାର ପ୍ରାୟେ କରି ବ୍ରହ୍ମା ରୁଦ୍ର ଇନ୍ଦ୍ରପଦ ସଂପଦକୁ ଲେଖି ॥

ଯୋଗ ସାଧ ବୋଲି ବୋଲ ହେ ଉଦ୍ଧବ ! ଯଦୁନାଥ ଅଜ୍ଞାଦେଲେ
ଜାଣିଲୁ କୁବୁଜା ଯୋଗେଶ୍ୱରୀ ତାଙ୍କୁ ଯୋଗମାର୍ଗ ଶିଖାଇଲେ
ଉଦ୍ଧବ ହେ !
ଯଦୁନାଥ ବଡ଼ ଯତି
ଯୋଗ ଶିଖିଲୁଁ ଏକାଗ୍ରହେ ତା ତହୁଁ ଷୋଳ ସହସ୍ର ଯୁବତୀ । ୮ ।

ଝଟକଲା ମନ ତାଙ୍କ ମଧୁ ନଗରେ ନାଗରୀମାନଙ୍କ ଭୁଲେ
ଝାଡ଼ ଟିକ ଯେସନେ କାକକୁଳେ ବସି ମିଳଇ ତା ନିଜ ଘରେ
ଉଦ୍ଧବ ହେ !
ଝୁରୁଥିବୁଁ ତହିଁ ପାଇଁ
ଝଲ କି ଶୋଭା ଶରଦ ପୂର୍ଣ୍ଣଚନ୍ଦ୍ର କାହିଁ ରଖିଛୁ ଲୁଗାଇ । ୯ ।

ନିର୍ମଳ ପ୍ରେମ ପ୍ରଶଂସିବା ଉଦ୍ଧବ ଦଶରଥ ରାଜାଙ୍କର
ନୟନୁଁ ଅନ୍ତର ହେବା ମାତ୍ରେ ରାମ ପ୍ରାଣ ଛାଡ଼ିଲା ଶରୀର
ଉଦ୍ଧବ ହେ !
ନିଲଜ୍ଜ ଜୀଇଛୁଁ ଅମ୍ଭେ
ନନ୍ଦସୁତ ଛାଡ଼ି ନିରାକାର ଭଜ ଶୁଣିଲୁଁ କହୁଛ ତୁମ୍ଭେ । ୧୦ ।

ଟାଣି ଚେଲାଞ୍ଚଳେ ଉରଜ ଅଞ୍ଚଳେ ଅଣି କୃଷ୍ଣଙ୍କୁ ବସାଉଁ
ଟହ ଟହ ହସ ଅଧରେ ଅଧର ମିଶାଇ ଚୁମ୍ବନ ଦେଉଁ
ଉଦ୍ଧବ ହେ !
ଟଙ୍କଧର ନୋହୁ ଅମ୍ଭେ
ଟେକି ହୃଦପୃକମଳ ଛଡ଼ଚକ୍ର ଭେଦ କହୁଅଛ ତୁମ୍ଭେ । ୧୧ ।

ଠାବ ନ କଲ ଏତେବେଳେ ହେ ଉଦ୍ଧବ ! ସଖୀଭାବେ ସଙ୍ଗେ ଥାଇ
ଠିକେ ଉଗଡର ଭାବ ଗୋଇଠା ସେ ହୃଦ ପଦ୍ମେ ଛନ୍ତି ବହି

ଉଦ୍ଧବ ହେ !
ଠୂଳ ବ୍ରହ୍ମ ତେବେ ଜାଣି
ଠ:ଠିକ ଭକତ ପାଦ ପଦ୍ମ ଚିହ୍ନ ହୃଦପ୍ର ଦେଶରେ ଅଣି । ୧୨ ।

ଡାକ କହୁଅଛୁଁ ଜଗତେ ବଦତ ଲୁଚା ସ୍ନେହ କଥା ନୋହି
ଡୋଳେ ଦେଖିଅଛୁଁ ବ୍ରହ୍ମାଦି ଇନ୍ଦ୍ରାଦି ଗୋପୁଁ ଗଲେ ଜ୍ଞାନ ପାଇ
ଉଦ୍ଧବ ହେ !
ଡାକ ମୁରଲୀରେ ହରି
ଢଳାଇ ଅମ୍ଭଙ୍କୁ କହି ଧର୍ମ କଥା ନ ପାରିଲେ ଆନ କରି । ୧୩ ।

ଢାଳ ରବି ଶଶୀ ମଣ୍ଡଳ ମଧ୍ୟରେ ହୁତାଶନେ ହେମାସନ
ଢାଙ୍କି ମନ ଚକ୍ଷୁ ପବନ ନିରୋଧି କହିଲେ ଯେ କୃଷ୍ଣ ଧ୍ୟାନ
ଉଦ୍ଧବ ହେ !
ଢମ ନୋହେ କଥା ସେହି
ଢଳ ହଳ କଳା ଫଣୀ ଯା ନିକଟେ ସେଇ ପାରେ ଅଟନ ଗୃହି ॥

ଅନେକ ତପ ଜପ ତୀର୍ଥ ବ୍ରତରେ ନ ପାରନ୍ତି ମୁନି ଧରି
ଅନୁମାନ ଅନୁଭବହିଁ କଳ୍ପନ ଅନୁରାଗବଶ ହରି
ଉଦ୍ଧବ ହେ !
ଅତି ପ୍ରେମ ହେମ ରଙ୍କ
ଆଶା ପୂର୍ଣ୍ଣ କଲେ ଗାଈ ଗୋପୀଙ୍କର ହୋଇ ସେ ବତ୍ସ ବାଳକ ॥

ତାଙ୍କ ଭୁଲେ ଅମ୍ଭେ ମାନବତୀ ହେଲେ ଗୁଞ୍ଜା ଫଳ ପ୍ରାୟେ ଦଶୁଁ ॥
ତନୁଯାକ ଦ୍ରବ୍ୟ ଅନୁରାଗ ପୂରି ମୁଖରେ ତମ ପ୍ରକାଶୁଁ
ଉଦ୍ଧବ ହେ !
ତୁଚ୍ଛ ଦେଉଥାଉଁ ଗାଳି
ଢରଣ ଧରି ଚରଣ ତଳେ ପଡ଼ି ଗୃହେ କହେ ବନମାଳୀ । ୧୬ ।

ଥୋକାଏ ଲାଜ ଫେଡ଼ି ଏଣୁ କହିଲୁଁ ତୁ ଯେଣୁ ତାଙ୍କ ବିଶ୍ୱାସ
ଥିଲୁ କୁଞ୍ଜରେ ଅଲୌକିକ ରସରେ ବୁଡ଼ିଛନ୍ତି ଦିଗବାସ
ଉଦ୍ଧବ ହେ !
ଥୋଇଲେ ଅନେକ ତପ
ଯତ୍ନେ ନ ପାଉଁ ମଦନ ଜଳଧିରେ ପଡ଼ିଲେ ତହିଁ ନାୟିକ । ୧୭ ।

ଦେହ ଦେଖିବା ପାଇଁ ବସ୍ତ୍ରହରଣ ବିଚାର କଲେ ମାଧୋଇ
ଦଇନ କଲୁଁ, ବୋଲେ ଆସ କୂଳକୁ ଦୁଇ କର ଶିରେ ଦେଇ
ଉଦ୍ଧବ ହେ !
ଦିଗମ୍ବର ପ୍ରାୟେ ହେଲୁଁ
ଦେଖିଲୁଁ ଲାଜ ମରଣହିଁ ବଳିଲା ମୁଦ୍ରିତ ଲୋଚନେ ଗଲୁଁ । ୧୮ ।

ଧୂରୁଁ ଦେଖି ବୋଲେ ମିଶିଛୁ ବସନ ଛାଡ଼ି ନିଅ ଯେ ଯାହାର
ଧରଣୀ ଦ୍ୱିଭାଗ ହେବ ପଶିଯିବୁଁ ଏମନ୍ତ ହେଲା ଶରୀର
ଉଦ୍ଧବ ହେ !
ଯାଇଁ ସମସ୍ତେ ମିଳିଲୁଁ
ଧରାଧରି କରି ଚିହ୍ନିବା ବସନ ଯେ ଯାହାର ଛାଡ଼ି ନେଲୁଁ । ୧୯ ।

ନିଶ୍ଚେ ଜାଣିଲୁଁ ପୁରୁଷ ଦୃଢ଼ ବୋଲି ମରମ ବାରତା ନାହିଁ
ନିଜ ନିକର ତାଙ୍କ ଅମ୍ଭ ବିଚାର ତୁମଙ୍କୁ କହିବେ କାହିଁ
ଉଦ୍ଧବ ହେ
ନିଜ ଲୋକ ତୁମ୍ଭେ ତାର
ନନ୍ଦସୁତ ସଙ୍ଗେ ପୀରତି ଆମ୍ଭର ଦେବଙ୍କୁହିଁ ଅଗୋଚର । ୨୦ ।

ପ୍ରେମ ପରଶ ନ ପାଇଥିବା ଯାକେ କାଞ୍ଚନେ ଥାଇ ମୁହାଁସ
ପ୍ରବେଶ ଖୁଡ଼ୁଡ଼ା ନୋହିଥିବା ଯାକେ ମାଉଳମାନେ ସର୍ବସ୍ୱ

ଉଦ୍ଧବ ହେ !
ପିତା ପୁତ୍ରେ କନ୍ୟା ଗଣ
ପତି ସୁରତି ନ ପାଇ ଥିବା ଯାକେ ପିତୁଳୀ ଧୂଳରେ ମନ । ୨୧ ।

ଫଳଭ୍ରମେ ଫୁଲ ଖାଉଥିବା ଯାକେ ନାନାଦି ଜ୍ଞାନ କଥନ
ଫୁଙ୍କା ହବଦ ଶୁଭନ୍ତି ଶଙ୍ଖେପ୍ରାପ୍ତ କର୍ମ୍ମଠଉ ପ୍ରେମ ଶୂନ୍ୟ
ଉଦ୍ଧବ ହେ !
ଯେତ କହ୍ନୁଙ୍କୁ କହିବ
ଫୁଲବନେ କାହ୍ନେ ଯାହାଙ୍କୁ ନେଲେ ସେ କହନ୍ତୁ ବାରେ ଆସିବ ।

ବଡ଼ କଥା କଲ ଅଇଲ ଉଦ୍ଧବ କହିଲ କୃଷ୍ଣ ସନ୍ଦେଶ
ବାରତା ପାଇଲୁଁ ତୁମ୍ଭକୁ ଦେଖିଲୁଁ ଏ ଆମ୍ଭ ଲାଭ ବିଶେଷ
ଉଦ୍ଧବ ହେ !
ବୋଲିବ ଏତେ ମାଧବ
ବିନୟ ହୋଇ ଗୋପୀଏ ମାଗିଛନ୍ତି ପ୍ରେମ-ପାସୋରି ମନ୍ତ୍ର । ୨୩ ।

ଭାବେ ଗଦ ଗଦ ବିହ୍ୱଳ ବଚନ ନୟନ ଜଳ ଜଳକା
ଭଗତି ଭାବରେ କଣ୍ଠ ତା କୁଣ୍ଠିତ ପୁଲକେ ରୋମ ମାଳିକା
ଉଦ୍ଧବ ଯେ
ଭାବେ ଗୋପୀ ପ୍ରଶଂସିଲେ
ଭଲ କରି ରତ୍ନମାଳାଏ ବାଛିଣ ଉଦ୍ଧବେ ମେଲାଣି ଦେଲେ । ୨୪ ।

ମଣ୍ଡାଇ ରଥ ସଜ କରି ଉଦ୍ଧବ ନନ୍ଦ ଦୁଆରେ ମିଳିଲେ
ମହାପ୍ରଭୁଙ୍କୁ ମୁଁ କି ବୋଲି ବୋଲିବି ଯଶୋଦାଙ୍କୁ ଜଣାଇଲେ
ଉଦ୍ଧବ ହେ !
ପିତା ପୁତ୍ର ସ୍ନେହ ବନ୍ଧ
ମହାପ୍ରଭୁ ବୋଲି ବୋଲୁ ଯେ ଭଣ୍ଡେ ବୟସରେ ବଡ଼ ଭୁଲ ॥

ଜନମ କାଳରୁ ଅନେକ ପ୍ରମାଦୁ ରଖିଲେ ତାଙ୍କୁ ଅମ୍ବିକା
ଯହିଁ ଥିଲେ ତହିଁ ଘାତ ପାଞ୍ଚ ନାହିଁ ରକ୍ଷଣୀ ଧନ ମୋ ଏକା
ଉଦ୍ଧବ ହେ !
ଯାଇ ତୁ ନ ପାସୋରିବୁ
ଯଶୋଦା-ଅଙ୍ଗଣୀ ଯଷ୍ଟିର କୁଶଳ ବାରତାହିଁ ଦେଉଥିବୁ । ୨୬ ।

ରତନ ବସନ ଅଳଙ୍କାରମାନ ଉଦ୍ଧବେ ମେଲାଣି ଦେଲେ
ରଥ ପଛେ ପଛେ ସୁଦାମ ସୁବଳ ଗୋପାଳେ ପାଛୋଟି ଗଲେ
ଉଦ୍ଧବ ହେ
ରାଜଦାଣ୍ଡରେ ରହିଲେ
ରଥୁଁ ଓହ୍ଲାଇଣ ସ୍ନାନଦାନ ସାରିଣ ଉଠି ଶିରେ କର ଦେଲେ । ୨୭ ।

ଲାଗିଲା ରଥ ସିଂହଦ୍ୱାରେ ଉଦ୍ଧବ କୃଷ୍ଣଙ୍କୁ ଦର୍ଶନ କଲେ
ଲମ୍ବ ହୋଇ ପଦ୍ମ ଚରଣେ ପଡ଼ିଣ ଉଠି ଶିରେ କର ଦେଲେ
ଉଦ୍ଧବ
ଲକ୍ଷ୍ୟ ପାଇ ପ୍ରଭୁ ଗଲେ ହେ
ଲକ୍ଷ୍ମୀପତି ପୁଣ ପୁଣ ପଚାରନ୍ତି ନୟନ ଅଶ୍ରୁ ସଞ୍ଚରେ । ୨୮ ।

ବ୍ରଜେ ବଧୂଭାବ ସୁମରି ଉଦ୍ଧବ ଅବନତ ଲୋଚନ କଲା
ବେଳକୁ ବେଳ ଝଳଝଳ ବଚନ କଣ୍ଠ ତା କୁଣ୍ଠିତ ହେଲା
ଉଦ୍ଧବ ହେ
ବିହ୍ୱଳ ଯଶାକୁ ଭଳି
ବହି ଝର ଝର ନୟନ ଲୋତକ କାନ୍ଦେ ଲାଜ ଭୟ ତେଜି । ୨୯ ।

ଶ୍ରୀକୃଷ୍ଣ ଶୋକସିନ୍ଧୁ ମଧ୍ୟେ ବୁଡ଼ିଲେ ଉଦ୍ଧବ ଦଶାକୁ ଦେଖି
ସ୍ନେହ ସୁମରି ବୋଇଲେ ବୃନ୍ଦାବନେ ବୃନ୍ଦାବତୀ ପ୍ରିୟସଖୀ
ଉଦ୍ଧବ ହେ

ଶ୍ରୀକୃଷ୍ଣ ଧ୍ୟାନେ ଜାଣିଲେ
ସଜଳ ଲୋଚନ ସକମ୍ପ ଅଧର ଉଦ୍ଧବେ ଧଇ ବାନ୍ଧିଲେ ।୩୦।
ସଚେତ ହୋଇଣ କହଇ ଉଦ୍ଧବ ସନ୍ଦେଶ ଗୋପପୁରର
ସବୁ ଗୋପୀଏ ମାଗିଛନ୍ତି ଗୋସାଇଁ ପ୍ରେମ ପାଟେସୋସ୍ତ ମନ୍ତ୍ରର
ମହାପ୍ରଭୁ !
ସଂଦା ଭକ୍ତିଭାବ ଶୁଣି
ସମ ନୋହନ୍ତି ସେ ବଶ୍ୟରେ ଗୋପୀକା ଗୋଷ୍ଠକ ଗୋଷ୍ଠଏ ମୂନ ।
ଶଙ୍ଖାରୀ ଭଣ୍ଡାରୀ ରଜକ ତାମ୍ବୁଲୀ ମାଲୀ ଗୋପୁଁ ଯୁଡ଼ଗଲେ
ସୁବର୍ଣ୍ଣ ରତନ ବଣାଣୀ କାପେଡ଼ୀ ବାନ୍ଧ ବୁଣା ପଳାଇଲେ
ମହାପ୍ରଭୁ !
ସନ୍ଧ୍ୟାବେଳେ ଗୋପପୁରେ
ଶିବ ଶିବ ବାଣୀ ଉଚ୍ଚସ୍ୱରେ ଶୁଣି ସବୁ ଗୋପୀଙ୍କର ଘରେ ।୩୧।
ହା ହା କୃଷ୍ଣ ବୋଲି ଗଲା ଧରାଧର କାନ୍ଦି ଏକକୁ ଅନେକ
ହଜାଇ ଜ୍ଞାନ ଶୋକସିନ୍ଧୁ ମଧ୍ୟରେ ବୁଡ଼ାଇ ଛନ୍ତି ବିବେକ
ମହାପ୍ରଭୁ !
ହତ୍ୟା ହେବେ ସିନା ମଲେ
ହୀରାରୁ କଠିଣ ହୃଦୟ ତୁମ୍ଭର ବୋଲିବା ବାଟରେ ନଗଲେ ।୩୨।
କ୍ଷମାନାଥ କହେ ଶୁଣ ହେ ଉଦ୍ଧବ ! ନରହେ ଅଛୁଁ ଗୋପରେ
ଛଡ଼ ନିଦ୍ରାଭାବ ସ୍ୱପନେ ଯେସନ ମନ ଖେଳେ ସର୍ବପୁରେ
ଉଦ୍ଧବ
କ୍ଷଣେ ଗୋପୀ ଲୀଳା ଶୁଣି
ଛାର ପ୍ରାଣେ ମୋତେ ଦେବ ଶ୍ରୀଧର ପ୍ରଣତେ କବି ଭୂପତି ପ୍ରେ ଭଣି ॥

# ବିଷ୍ଣୁଦାସଙ୍କ ଚଉତିଶା

ବିଷ୍ଣୁ ଦାସ ଭକ୍ତ ପ୍ରବର ଯୁଗର ଜଣେ ମହାକବି । ଲୀଳାବତୀ କାବ୍ୟର ରଚୟିତା ବାଣପୁର ରାଜା ରଘୁନାଥ ହରିଚନ୍ଦନ "ଭକ୍ତ ବତ୍ସଳ" ଦେଇ ତାଙ୍କୁ ତାଙ୍କ ସଭାରେ କବିଚନ୍ଦ୍ରରୂପେ ରଖିଥିବାର ଲେଖିଅଛନ୍ତି । "ବିଷ୍ଣୁଦାସ ନାମରେ କବି । ଯେଣ୍ଟ ଗୀତେ ଚଳନ୍ତି ପୃଥ୍ୱୀ" ଏହାମଧ୍ୟ ଲୀଳାବତୀରେ ଲେଖାଥିଛି । କବିଙ୍କ ଦୁଇଗୋଟି ଚଉତିଶା, ସାବିତ୍ରୀ ଚରିତ କାବ୍ୟ ଓ ଲୀଳାବତୀ ନାମକ ଗ୍ରନ୍ଥେ ଅପୂର୍ଣ୍ଣ କାବ୍ୟ ଛଡ଼ା ତାଙ୍କର ଅନ୍ୟ କୌଣସି ଲେଖା ମିଳନାହିଁ । ସେ ଯେ ଅତି ଉଚ୍ଚ ଦରର କବି ଏହି ଚଉତିଶା ତାହାର ପ୍ରମାଣ । ପ୍ରାଣଭରି ପ୍ରେମ ନିବେଦନରେ ସମର୍ଥ । ଓଡ଼ିଆ ଗୀତ ଜାତ । ସଂଖ୍ୟାବହୁଳ ଏହି ଚଉତିଶା ତୁଲ୍ୟ ପ୍ରାଣଭରା କବିତାରେ ଓଡ଼ିଆ ହୃଦୟର ଅନ୍ତର୍ନିହିତ ଭାବଧାର ପ୍ରତିବିମ୍ବ ଦର୍ଶନୀୟ ।

କମଳଦଳଲୋଚନ ! କୁରଙ୍ଗ ଅଙ୍କ ବଦନ !
କରିବରଗାମୀ ଧନ ! ମୁନିମୋହନ !
କୃଶୋଦରୀ-ରୂପରାଶି ! କୁଟିଳ ଚିକ୍କଣକେଶି !
କନ୍ଦର୍ପ-କେଳି-ଲାଳସି ପିକବଚନ !
କାମିନୀ ରେ ଗୁଡ଼ି ତୋ ମୁଖ
କାମଦେବକାଣ୍ଡ ନିତ୍ୟେ ଦେଉଛି ଦୁଖ । ୧ ।

ଖଞ୍ଜନୀନୟନୀ ସଖି ! ରସିକା ! ଅଜନ୍ମ ସୁଖୀ !
ଖଣେହେଁ ନୟନେ ତୋତେ ନୋଦେଖେ ମରୁଛି
ଖଣ୍ଡି ସେ ସୁଖ ବିଧାତା ଖଞ୍ଜାଇଲା ଘୋର ଚିନ୍ତା
ଖଣେ ଯେ ନ ଛାଡ଼ୁ ମୋତେ ସ୍ୱରୁ ସୁକେଶୀ
ଖଟ୍ଟଥିବ ସନ୍ତତେ ତୋତେ
ଖଣ୍ଡେନ୍ଦୁଶେଖର ଏହା କରିବେ ମୋତେ । ୨ ।

ଗୁପତ ବଚନ୍ତ ତୋର          ଗୁଣନ୍ତେ ଶରୀର ମୋର
ଘାରି ହୋଉଥାଇ ପ୍ରେମେ ମଧୁରହାସି !
ଗେଲେ ଗୃହିଁବା ନୟନ          ବନ୍ଦୀ କରିଅଛୁ ମନ
ଗୁଣରେ ଗୁଣଗରନ ଯୁବତୀମଣି
ଗରୁଡର ଯେତେ ନେସନେହ
ଗୁପତ କ୍ରୀଡ଼ାରେ କରି ଜାଣିଛୁ ଦେହ । ୩ ।

ଘନସ୍ତନୀ ଘନ ନୀଳା—          ଘମଟେ ଚନ୍ଦ୍ରଲେ ଦେଖାତେ
ମଦନ କରଇ ମୋତେ ଅତି କାତର
ଘୋଟିଥାଏ ଦବାନଳ          ଅନ୍ତରରେ ବସି
ଅଧର ଉପରେ ଦେବ ଚୁମ୍ବନ ତୋର
ଘେନ ତୋର ବନ୍ଧୁ ଗୁଣ
ଘାରି ହୋଉଥାଇ ନିରନ୍ତରେ ପରାଣ । ୪ ।

ନିରନ୍ତରେ ନୟନରେ          ତୋ ରୂପଥାଇ ନିର୍ଭରେ
ନ ପିଛୁଡ଼ଇ ନୟନ ଅଦୃଶ ଡ଼ରେ
ନାଗଙ୍କରତନ ଜନ୍ମେ          ଜନ୍ମେ ମୋତେ ମିଳିଥିବ
ନିରନ୍ତରେ ଏ ବର ମାଗଇ ଶଙ୍କରେ
ନୀରଜଲୋଚନୀ ଚତୁର !।
ନଷ୍ଟେ ମୁଁ ତୋହୋର ଦାସ ଶୁଣ ସୁନ୍ଦର !। ୫ ।

ଚନ୍ଦ୍ରମାବଦନ ତୋର          ଚକୋର ଲୋଚନ ମୋର
ଚନ୍ତା କରୁଥାଇ ନିତ୍ୟେ ତୋର ବଦନ
ଚନ୍ଦ୍ର ଏବେ ହୃଷ ମୋତେ          ଜୀବନ ଥିବ କେମନ୍ତେ
ତୋହୋର ବିହୁନେ ଗଲେ ଯାଉ ଜୀବନ

ଗୁରୁକେଶି ! ମାଗଇ ତୋତେ
ଚତୋଇବୁ, ଅନ୍ୟକ୍ଷଣେ ଚିତ୍ତରେ ମୋତେ । ୬ ।

ଛଟେଣୋଦର ! ଛିଡ଼ଡଲ— ମଣ୍ଡନୀ ନାଗେଣ୍ଡବର !
ଛାପ ନ କରିବୁ ମନେ ବାଞ୍ଛା ମୋର !
ଛତ୍ର ଯେତେ ଦୂରେ ଥିଲ ଅଛୁ ତୋହୋ ପାଶେ ଭଲେ
ଛଗୃହିବୁ ଏମନ୍ତ ମୋ ଜୀବନ ତୋର
ଛାଡ଼ିପି ତୋ ମନରୁ ଚିନ୍ତା
ଛଇଳମୋହନ ତୁ ! ମୋ ଜୀବନଦାତା । ୭ ।

ଜଗନ୍ନାଥେ ଯୋଡ଼ି କର ମାଗୁଥାଇ ଏହି ବର
ଯୁବତୀରତନ ବାରେ ଭେଟାଅ ମୋତେ
ଯାମିନୀ ଶୟନେ ନେତ୍ରେ ନିଦ୍ରା ନ ମାଡ଼ଇ ମୋତେ
ପ୍ରାଣଧନ ସ୍ୱପ୍ନେ ଅବା ଦେଖନ୍ତି ତୋତେ
ଜପୁଥାଇ ମନ୍ତ୍ରେ ଏହା
ଯୁବତୀରତନ କରିଥିବୁ ସୁଦୟା । ୮ ।

ଝଲକନୟନ ! ତୋର ସେନେହେ ବନ୍ଧେ ଗୃହିଁବା
ନୟନେ ମୋ ଝରୁଥାଇ ନିଶିଦିବସେ
ଝୁରିଝୁରି ତନୁ ଖୀନ ଲୁଚଇ ନାହିଁ ଚନ୍ଦନ
ଝମଟେହେଁ ମିଳିବି କି ତୋହୋର ପାଶେ
ଝାଡ଼ିରେ ଯେ ଥାଇ ମାଳତୀ
ଝମଣେହେଁ ଭୃଙ୍ଗ ନ ଛାଡ଼ଇ ତା କତି । ୯ ।

ଞନିର୍ମଳ-ନୀରଜ-ନେତ୍ରି ! ଞନିର୍ମଳ କେତକୀ-ଗାତ୍ରି !
ଞପାଁ ପ୍ରାଣ ରହିଅଛି ତୋତେ ନ ଦେଖି

ନାହିଁ ମୋ ଦେହରେ ମନ    ଅଛି ତୋର ସନ୍ନିଧାନ
ନୟନ ପ୍ରତିମା ମୋର ଜୀବନ ସଖି
ନିଶି ଦିବା ଲକ୍ଷେ ବରଷ
ନ ଦେଖିବାରୁ ତୋହୋର ମଧୁର ହାସ । ୧୦ ।

ଟଳ ମୋ ଅଙ୍ଗରୁ ପ୍ରାଣ    ଯିବାକୁ ବାହାରୁ ଥାଇ
ତୋର ଆଲିଙ୍ଗନ ଭାବ ବିଗ୍ରହକର
ଟାକିଥାଇ ଅନନ୍ୟକ୍ଷଣେ    ପ୍ରିୟା କି ଆସିବ ଏଣେ
ରହିଅଛି ପ୍ରାଣ ତୋର ଗୁଣ ସୁମରି
ଟେକି ଅଛି ଆଶ ମୁଁ ତୋତେ
ଟଳ କି ଆକାଶ-ଶଶୀ ପଡ଼ିବ ହସ୍ତେ । ୧୧ ।

ଠଣି ତୋହୋର ପୟୋଧର    ଯେବେ ଧରିବ ମୋ କର
ସେ ଦିନ ଜନମ କାଳ ଫଳ ଫଳିବ
ଠାଟିକି ଚାହୁଁକେ ତୋର    ପୁଣି କି ଲାଗିବ କର
ବିଧାତା କି ଏ ନିକଟେ ଏ ବର ଦେବ ?
ଠାବେ ଠାବେ ଲେଖି ତୋ ମୁଖ
ଠାଠିକି ଦର୍ଶନେ ସଖି ! ଲଭଇ ସୁଖ । ୧୨ ।

ଡାକୁ ଯେ ତୋଳାରେ ଠାର    ଡମ୍ବରୁ-ମଧ୍ୟା ସୁନ୍ଦରି !
ଡାଳିମ୍ବ ବୀଜ ଦଶନ ! ସ୍ନେହରେ ମୋତେ
ଡକା କରଇ ମଦନ    ସେ କଥା ଚିନ୍ତିଲେ ମନ
ଦମକଇ ହୃଥି ମୋର ଚିନ୍ତିଲେ ତୋତେ
ଡରୁଥାଇ ତୋର କୋପକୁ
ଡର ଏବେ ହୋଇଲା ମଦନ ବାଣକୁ । ୧୩ ।

ଢମ ପ୍ରାପ୍ତେ ନ ମଣିମୁ        ଏମନ୍ତ ନଷ୍ଟେ ଜାଣିମୁ
ଜୀବନ ଶରୀର ମୋର ଅମୃତ୍ତ ତୋର
ଢାଳ ତୋ ସୁଧା ଅଧରୁ        ପାନ କରିବାର ଯାଏ
ମତେ କି ଜୀଆଇଥିବ ପଞ୍ଚମ ଶର
ଢାଳେଦେଁ ତୁ ପ୍ରଭୁ ମୋହର
ଢମ ପ୍ରାପ୍ତେ ନ ବୁଝିବୁ ନଷ୍ଟେ ତୋହର । ୧୪ ।

ଏଣାଙ୍କ ଉଦୟ କାଳେ        ଅମ୍ବୁଜ ଦଳ ଲୋଚନ !
ଅଢଙ୍ଗ ହୁଅଇ ସଖି ! ତୋ ମୁଖ ଚନ୍ଦ୍ର
ଅନ୍ତରେ ନ ଥାଇ ମନ        ନିରନ୍ତରେ ତୋତେ ଧ୍ୟାନ
ରଜନୀ ପତିପରାଭ କରନ୍ତି ନିତି
ଅବନୀରେ ଯେତେକ ସୁଖ
ଅଣପ୍ରାପ୍ତେ ନ ମଣଇ ଦେଖି ତୋ ମୁଖ । ୧୫ ।

ତରୁଣୀ କୁଳ ରତନ        ତୋତେ ଲଭିଥିଲେ ମନ
ଅନ ନାରୀ ନିକଟକୁ କେମନ୍ତେ ଯିବ
ତୋ ଭାବ ରସ ସମାନ        ନାହିଁ ନାହିଁ ତ୍ରିଭୁବନ
ରତିରସ ସତ୍କର କେ ଜାଣିଥିବ ?
ତୁ ମୋହର ଜୀବଜୀବନ
ତୋର ବିନ୍ଦୁ କୃପାଁ ରହିଅଛି ପରାଣ । ୧୬ ।

ଥେଣ୍ଟ-ଶିରୋମଣି ପ୍ରିୟା        କରିଥିବୁ ମୋତେ ଦୟା
ଆପଣା ସେବକ ଦୋଷ କଲେହେଁ ସହି !
ଥିବୁ ଏମନ୍ତ ବଶ୍ୟଇ        ଆନ ମନରେ ନ ଧରି
ଦୋଷ ମୋର ଛାଡ଼ିଥିବୁ ପରାଣ ସହି !

ଥିବ ଦାସ ହୋଇ ତୋହର
ଥଳ-ନତମ୍ବିନ ! ମୋର ଏହି ବଶ୍ବର । ୧୭ ।

ଦୟାଜଲନିଧି ପ୍ରିୟା ଦାସଜନେ କରୁ ଦୟା
ତେଣୁ ମୋହର ଭରସା ଅଛୁ ଅପାର
ଦେଖିଲେ ବଦନ ତୋର ଛଡ଼ିବ ଦୁଃଖ ମୋହର
ଛନ୍ଦିକା ରମଣୀ ତୁ ମୋ ସୁଖ-ସାଗର
ଦୟା ଯେବେ କରବେ ହର
ଦେବ ତୋହର ସେବାକୁ ଶରୀର ମୋର । ୧୮ ।

ଧୀରଗାମୀ ନଶା କାଳେ ଏକାନ୍ତ ଶୟନ ବେଳେ
ମାନସିକେ ତୋତେ ଅଣି ସଙ୍ଗ କରଇ
ଧୀରେ ହୃଦରେ ପକାଇ ଅଧରେ ଚୁମ୍ବନ ଦେଇ
ନ ଦେଖି ନୟନୁ ବେଗେ ନୀର ଗଳଇ
ଧନ୍ୟ ଧନ୍ୟ ମହିମା ତୋର
ଧଇର୍ଯ୍ୟ ଭାଙ୍ଗଇ ଶୁଣ ଚନ୍ଦ୍ରଲେ ମୋର । ୧୯ ।

ନାହିଁ ନାହିଁ ନବ ପଣ— ଭୁବନେ ମହିମା ତୋର
ନସ୍ତେ ତୁ ନାଗରୀ-ଶିର ମୁକୁଟ-ମଣି
ନୟନେ ଯେହୁ ଦେଖିବ ସେ କି ତୋତେ ମୁରୁଛିବ
ମଦନ-ଜଳନିଧି କି ତୁ ସେ, ତରଣୀ
ନୀରଧିରେ ଝାସିବି ଅଙ୍ଗ
ନାଗରୀ ବଚନ ତୋର ଲଭିବ ସଙ୍ଗ । ୨୦ ।

ପଦ୍ମମୁଖି ପଙ୍କଜ ନ— ଯନ ତୋଳେ ମୋତେ ଦେଖି
ସଲ୍ଲାସ ହୋଇ ଉଠିବା ଭାବ ଚନ୍ଦ୍ରଲେ

ପରାଣ ଲୋଡ଼ଇ ତୋର ନକଟକୁ ଗମିବାର
ନ ଯାଇ ରହଇ ଶିବ ଶିବ ବୋଇଲେ
ପାସୋରବ୍ରି ନାହିଁକି ମୋତେ
ପରାଣହିଁ ଦେବ ଧନ ! ତୋହ ନମିତ୍ତେ । ୨୧ ।

ଫୁରୁଣା-ଆନନ ! ମୋତେ ମେଲାଣି ଦେବା ସମୟେ
ଲୁହେ ଯେ ଅଜ୍ଞାନ ( ? ) କଲୁ ଲୋଚନ ବେନି
ଫୁଟିଲା ପଦ୍ମ ଏ ହୋଇ ନିଶ୍ୱାସ ଖରେ ପକାଇ
କାତର ହୋଇଲୁ ମଥାଠାରୁ ସଜନି !
ଫୁଲିଲା ଯେ ସୁନ୍ଦର ନାସା
ଫାଇ କ୍ରୋଧରୁ ନଇଲା ମୁଖରୁ ଭାଷା । ୨୨ ।

ବସ୍ତୃର ସେ କଥା ମାନ ବୁଜଇ ବେନି ନୟନ
ବୋଲଇ ସେ ବଧୂମୁଖୀ କ କରୁଥିବ
ବସ୍ତୃର ମୋହର କଥା ପାଉଥିବ ବହୁ ବ୍ୟଥା
ନିରନ୍ତରେ ମୋର ମୁଖ ଧ୍ୟାନ କରିବ
ବାଲା ! ମୁଁ ବୋଲଇ ଏମନ୍ତ
ବେଭାରେ ତ ଛାଣି ଯେ ଯାହାର ଯେମନ୍ତ । ୨୩ ।

ଭଲ ଭଲ ଦେହ ଧାତା ଗଢିଲା ଏକ ଜୀବନ
ଭାବନ ! ଭଦ୍ରଲୋଚନ ! ଏମନ୍ତ ଜାଣ
ଭେଟାଇଲା ଧାତା ଭଲ ଯୋଗରେ ସଙ୍ଗତେ ତୋର
ନିଶ୍ୱାସେ ମୁଁ ମୂର୍ଚ୍ଛିବି କ ପ୍ରେହା ନ ଜାଣ
ଭୋଙ୍କା ମନ ଭାତେ ଯେସନ
ଭ୍ରମର ମାଳଣୀ ବନୁ ଆନରେ ମନ । ୨୪ ।

ମତ୍ତରାଜହଂସୀ ମନ          କମଳ ମୃଣାଳ ବିନୁ
ଆନରେ ରସଇ କାହିଁ ମୃଗଲୋଚନ !
ମନରେ ଏଣୁ ଭରସା          ଶୁଣରେ ସରୋଜ ଦୃଶା
ମୋର ବିନୁ କେଢେ ନେଉଥିବୁ ରଜନୀ
ମତ୍ତପିକ ବୃନ୍ଦ ବକୁଳେ
ମଉନ ହୁଅଇ ନ ପାଇଲେ ବକଲେ । ୧୫ ।

ଜାଣୁ ତୁହି ଯୁବତୀ ର—          ତନ ଯୁବା ଶିରୋମଣି
ଯାହା ବୋଲୁଅଛୁ ନିଶି ଶେଷ କାଳରେ
ଯେମନ୍ତ ସେ କଥା ଆନ          ନୋହୋଇ ଜାଣୁ-ରତନ !
ଯେମନ୍ତେ ଧନ୍ୟ ବୋଲନ୍ତି ଜନ ସଭାରେ
ଯେତେ ତୋର ମୋର ବିଗ୍ରହ
ଜପୁ ଜପୁ ସରଇ ରଜନୀ ବାସର । ୧୬ ।

ରମଣୀରତନ ବାମା          ରସିକା-ପୂର୍ଣ୍ଣଚନ୍ଦ୍ରମା
ରସଇ ଯାହାର ମନ ଯାହାର ତହିଁ
ରସଇ କି ତାର ମନ          ଦେଖିଲେ ସ୍ବର୍ଗର ଜନ
ଏମନ୍ତ ବିଗ୍ରହ ଥିବୁ ଅମଳମୁଖି !
ରତନ ସେ ସୁନାରେ ସଙ୍ଗ
ରେହାଇଲେ ଆନ ସଙ୍ଗେ ନ ଧରେ ରଙ୍ଗ । ୧୭ ।

ଲାବଣ୍ୟମଣି ସୁନ୍ଦର !          ଲାଜ ଲାଜ ଭାବ କର
ପ୍ରଥମ ସଭେଟେ ମୋତେ କଥା ନ କହୁ
ଲୁଆଇଁ ବଦନ-ଇନ୍ଦୁ          ବରଷାଇ ସୁଖ-ସିନ୍ଧୁ
ଭଲ କରି ମୋ ମୁଖକୁ ଠେକି ନ ଚାହୁଁ

ଲାଜ ଯେବେ ଛାଡ଼ିଲୁ ମୋତେ
ଲାବଣ୍ୟ ବଚନେ ବଶ କଲୁ କଷ୍ଟତେ । ୨୮ ।

ବର୍ତ୍ତୁଳ ନିତମ୍ବ ଦେଶ ବଳନ ମାତ୍ର ବନ୍ଧନ
ଦେଖିଲେ ହୃଦୟ ମୋର ହୋଏ ଆତୁର
ବୋଲଇ ବଧୂବଦନ ! ତୁ ମୋ ହୃଦୟମଣ୍ଡନା
ଦେଖାଇବୁ ନାହିଁ ମାତ୍ର ବଳନ ତୋର
ବାନ୍ଧବ ରେ କହୁ ଯେ ଶୁଣି
ବୁଝି ଏବେ ଭ୍ରମ ମୋର ସେ ରସ ଗୁଣି । ୨୯ ।

ଶରଦ ଶଶୀ କିରଣ କାହାକୁ କରେ ଶୀତଳ
ମୋତେ ଶୀତଳ କରଇ ତୋ ମୁଖ-ଚନ୍ଦ୍ର
ସତେହେଁ ଶଶିଶେଖର ଏହା କି କରିବେ ମୋତେ
ତୋହୋ ମୁଖ ଦେଖି ହୋଉଥିବ ଆନନ୍ଦ
ପିନ୍ଧ୍ ତନ୍ତେ ଶିବ ସେବିବ
ସେ ଫଳ ପୁରୁଷୋତ୍ତମେ ତୋତେ ଲଭିବ । ୩୦ ।

ଶିରୀଷ କୁସୁମ ଅଙ୍ଗ ସଘନ ଜଘନ ତୋର
ନୟନକୁ ବନ୍ଦୀ ଘର କାମଦେବର
ସତେହେଁ କି ସରୁ ନଖ ତହିଁ ଦେବ ପ୍ରିୟେ ! ରେଖ
ଏଡ଼େ ବଡ଼ ଭାଗ୍ୟ କି ଦଶିବ ମୋହୋର
ସ୍ନେହ ଥାଉ ଥାଉ ବଚ୍ଛେଦ
ଷୋଳଧର ନିବାରି କି ପାରିବେ ଖେଦ ? । ୩୧ ।

ସ୍ନେହେ ତୋତେ ପଚାରଇ ନଖ କ୍ଷତ ଦେବା ପାଇଁ
ଶ୍ରବାରେ ଯେ ହୋଉ ବୋଲୁ ବଦନ ଠାରି

ସେ କଥା ମନେ ବିଚାର    ନ କରବୁ ଦୁଖ ପକ୍ଷି !
ଛାଡ଼ିଥିବୁ ଦୁଖ ପକ୍ଷି ! ଦୋଷ ବିଚାର
ଶୟନରେ ହୋଇ ବିମନ
ସୁରତ ବିକାରେ ପୁଣି ହୋଇ ପ୍ରସନ୍ନ । ୩୨ ।

ହଂସଗମନ ! ସୁକେଶି !    ମୋତେ ଚୁହାଁ ମନ୍ଦ ହସି
ଚୁମ୍ବନ ଦେବାକୁ ଓଷ୍ଠ ଗୋଜ ଯେ କରୁ
ହରଷରେ ହୋଇ କୋପୀ    ଦଶନେ ଅଧର ଚିପି
କଥିତ କର୍ଷାଇ ଶିର ନୟନେ ଠାରୁ
ହୋଇ କାମବାଣେ ଅସ୍ଥିର
ହରଷେ ଶରୀର ଯାକ କର ବେପଥ । ୩୩ ।

କ୍ଷିତିତଳ-ମଣ୍ଡଳୀକ    ବଦେଶେ ଚନ୍ଦ୍ର ନାୟକ
ଦୂତ ହାଥରେ ଏ ଗୀତ ବାରତା ଦେଲା
ଯୋଡ଼ି ପୁଣି ପ୍ରିୟା କରେ    ଶୁଣି ନକ ପ୍ରିୟା ମରେ
ମଲେ ମୁଁ ନକ ଜୀଇବ ଯେହ୍ବା ଲହଲା
ଛଛନ୍ଦେ ଚଉତିଶା ଶେଷ
ଛଡ଼ାଅ ମନୁ ବିରସ ଜୟ ଯମେଶ । ୩୪ ।




କଟକ ପ୍ରାଚୀ ମୁଦ୍ରଣାଳୟରେ ଶ୍ରୀ ବଚ୍ଛନ୍ଦଚରଣ ପଟ୍ଟନାୟକ ବି: ଏ: ଙ୍କ ଦ୍ୱାରା ମୁଦ୍ରିତ ।

# ଚଉତିଶା ଚନ୍ଦ୍ରିକା

## ମଥୁରାବିଜେ ଚଉତିଶା

୨—୨ କନ୍ଦର୍ପବାଧା—ମଦନବ୍ୟଥା । ୭।୧ ଦୁର୍ମିଳସୁତ—କଂସ । ୭।୨ ଛଦ୍ମ—ବୃଥା ବଢ଼ାଇ । ୭।୩ ବିମନ—ମନଦୁଃଖ । ୮।୨ ଯାମଲା, ତଙ୍କା, ଅର୍ଘା—ସେହି ନାମର କଂସର ଅସୁର ଦୂତ । ୯।୩ ଝଗଡ଼ କର—କଳହ କର, ଅକ୍ରୋଶ ରଖି । ୧୧—୧ ଠଙ୍କଧର—ମହାଦେବ । ୧୧।୨—ଠାଣି—ଛଳବଚନ । ୧୨।୩ ଠାବକରବ—କଳନା କରବ । ଡମ୍ବରୁଧରରିପୁଜନକ—ଡମ୍ବରୁଧର—ମହାଦେବ ତାଙ୍କରିପୁ ମଦନ ତାଙ୍କ ଜନକ ଶ୍ରୀକୃଷ୍ଣ । ୧୪।୨—ଅମ୍ବନ୍ତ—ଅମ୍ବପାନଙ୍କୁ । ୧୬।୩ ଏଣୀନୟନୀ—ହରିଣାକ୍ଷି । ୧୬।୩ ଉମାକାନ୍ତ—ମହାଦେବ । ୧୭।୩ ତହିଁ—ଠାରେ । ୧୯।୧ ଧରଣୀଧର—ଶ୍ରୀକୃଷ୍ଣ । ୧୯।୪ ଧାଇଁକାରେ—ଶୀଘ୍ର । ୨୧।୩ ଠାବ—ସ୍ଥାନ । ୨୨।୨ ଫଳଣା—ଆନନ୍ଦ । ୨୪।୩ ଭବାନୀପତିରିପୁତାତ—ଭବାନୀ—ପାର୍ବତୀ, ପାର୍ବତୀଙ୍କ ପତି—ମହାଦେବ ତାଙ୍କ ରିପୁ ଅର୍ଥାତ୍ ଶତ୍ରୁ—ମଦନ, ମଦନଙ୍କ ତାତ—ଶ୍ରୀକୃଷ୍ଣ । ୨୫।୧ ମାୟୁଃଧରଙ୍କ ଠହିଁ—ଶ୍ରୀକୃଷ୍ଣଙ୍କଠାରୁ । ୨୭।୨ ତନଇ—ତନୟ, ପୁଅ । ୨୮।୨ ବେଢ଼ି—ନିବେଶ କର । ୨୮।୪ ଲବଣ୍ୟନିଧି—ଶ୍ରୀକୃଷ୍ଣ । ୩୧।୨ ଦୁରିତ—ପାପ ।

---

## ଦୀନବନ୍ଧୁ ଚଉତିଶା

୧।୧ ଭଲେଣି—ଚନ୍ଦ୍ର । ୨।୧ ସଦନ—ଘର । ୨।୪ ବର୍ତ୍ତିବୁଁ—ବଞ୍ଚିବୁଁ । ୨ । ୫ ରୁନ୍ଧାଇବୁଁ—ରୋପଣ କରିବୁଁ । ୩ । ୨ ଅମି—ଅମୃତ ।

୪ । ୧ ନୀପ—କଦମ୍ବ । ୪ । ୫ ଦୂତ୍ୟ—ଦୂତ । ୫ । ୧ ସୁହାଗୀ—ସୁହାଗବନ୍ତ । ୫ । ୨ କାଳଅ—କାଳୀୟ ସର୍ପ । ୫ । ୪ ବଟସାର—ଚାପୋର । ୬ । ୨ ମୂରୁଠ—ଧମକଚମକ । ୬ । ୫ ଗୃପିବି—ଛେଚୁ ଉରସ୍ଥଳ କରଦେଇଁ । ୭ । ୨ ଶିରିପଢ଼ି—ଶ୍ରୀପତି—ଲକ୍ଷ୍ମୀନାୟକ । ୮ । ୫ ଖୋଇ—ଯୁଭ ନାଅଁ । ୯ । ୧ ଝିମ୍ପିଟେଣ୍ଟେ—ଘଣ୍ଟେ ୯ । ୨ ଛୁପାଇ—ଠେଲିଦେଇ । ୧୧ । ୨ ନାଶପଣ—ନାଶକଥା । ୧୩ । ୪ ତକା—ଅତ୍ୟାଗ୍ରହ । ୧୪ । ୨ ଥାଳଗୃହିଁ ବାନ୍ଧଉଛେବ—ବାଙ୍କ ଗୃହାଣିରେ । ୧୪ । ୪ ଥାଳଗୃହିଁବାର—ବାଙ୍କଗୃହାଣୀ । ୧୪ । ୫ ଫନ୍ଦି—ବନ୍ଧଦୋଇ । ୧୬ । ୧ ତ୍ରିଲୋଚନରପୁଶର—କାମଶର ୧୭ । ୧ ଥବିର—ସ୍ଥିର । ୧୮ । ୫ ଅଭବ—ବେଅନୁଗ୍ରହ । ୧୯ । ୪ ଧଇଅଛୁଁ—ମନେରଖିଅଛୁଁ । ୧୯ । ୫ ଧ୍ରୁବକର—ଧାର୍ମିକର । ୨୨ । ୧ ଫାଇ—ଫିଟାଇ । ଫୁରୁଣା—ଅନନ୍ଦ । ୨୨ । ୪ ଫମ—ନିଷ୍ଟିତ୍ର (?) ୨୩ । ୪ ବୋଲ—କଥା । ୨୭ । ୪ ଯୋଗରେ ରହିଲେ—ମଥିର ନାହାଙ୍କ ପ୍ରେମ ଆରାଧନା ପାଇଲେ । ୨୮ । ରସାଉଛ—ରସରେ ବୁଡ଼ାଉଛ । ୨୯ । ୧ ଲମ୍ବ କରିଥିବା ଯାକ—ଅମୃଠାରେ ମନ ରଖିଥିବା ଯାକ । ୩୧ । ୧ ଶଶଲାଞ୍ଛନ—ଚନ୍ଦ୍ର । ଭର୍ଗବ—ଲଣ୍ଠାରେ ଚଳାଇବ । ୩୧ । ୨ ସାବେଣି—ସାରେଣି, ନହି । ୩୨ । ୨ ଛୁଠିକର—ଫିଟାଇ ।

---

## ଗୋପଜୀବନ ଚଉତିଶା

୧ । ୪ କଟକାଳି—ପଦା । ୧ । ୭ କକେ—କାହିଁକି ? ୧ । ୮ ମୃଦୁରସ—କୋମଳ କଥା । ୨ । ୧ ବୋଲ—କଥା । ୨ । ୩ ଘିସ ଘିସ—ଘଷା ଘଷି । ୩ । ୧୩ ଚାଢ଼ିକୋଢ—ଗରୁକୋପ । ୪ । ୭ ଘାଠ—ଘାଠ—ବ୍ୟର୍ଥ । ୪ । ୧୦ ହାକ—ନିମନ୍ତ୍ରଣ । ୫ । ୨ ମଧୁଜୀବ—ଭ୍ରମର

୬ । ୧୪ ଚନ୍ଦ୍ର-ବଚନ । ୭ । ୧ ମୃଦାଂଘ—ଢେଙ୍ଗ । ୮ । ୩ ରୁଦାର
—ଅହଙ୍କାର । ୮ । ୨ ଲୁବ୍ଧ୍ନା-ଲୋଭନା । ୮ । ୧୪ ଯୁଗନ୍ନଗଡେ—
ଦୁଇ ଜଗତରେ ୯ । ୨ ଝଲକ—ଲକ୍ଷି ରହସ୍ୟ । ୧୧ । ୮ ଝମାଳ—
ଥିଥୁା । ୧୨ । ୧୩ ଢକେ—କାହିଁକି । ୧୩ । ୧ ଅନ୍ତେ—ହୃଦୟରୁ ।
୧୩ । ୭ ଉଙ୍କ—ପାପ । ୧୩ । ୧୩ ଡେଲାଇ—ଛଡ଼ି । ୧୫ । ୧
ଅଣାଅପରାଧୀ—ନିର୍ଦ୍ଦୋଷ । ୧୫ । ୩ ବଳଅଭିଳୁଣି—ବଳେଇ
[illegible]ଲୁଣି । ୧୬ । ୩ ଭୁମ୍ବରେ—ଭୂମ୍ବ ଦ୍ୱାର । ୧୬ । ୧୪ ଢାଠୁଂ—
ଢଠରୁ । ୧୬ । ୧ ଥୟେ—ସ୍ଥିର କର । ୧୭ । ୩ ଥାଉ ଧନ—
ଥୋଇଲା ସମ୍ପଦ । ୧୯ । ୩ ଧନ୍ୟ ସେ ବ୍ରାହ୍ମଣ ନାରୀ—( ଶ୍ରୀକୃଷ୍ଣଙ୍କୁ
ବ୍ରାହ୍ମଣ ନାରୀଙ୍କ ଅନ୍ନ ସମର୍ପଣ କଥା ଭାଗବତ ୧୦ମସ୍କନ୍ଧରେ ଦ୍ରଷ୍ଟବ୍ୟ) ।
୨୧ । ୭ ପାଲଟି—ଫେରି । ୨୨ । ୩ ପ୍ରରୁଣା—ସୁଖ । ୨୨ । ୬
ଫାଳ—ଫେଡ଼ । ୩୩ । ୮ ବରହ ପୁଚ୍ଛିଥ—ମୟୂର ଚୂଳଆ । ୨୯ । ୩
ବଳ—ବଳୁଲି ୩୩ । ୮ ଦାକନ୍ତି—ଡାକନ୍ତି । ୩୪ । ୧ ଛୁଷ୍ଟାଳ—
ରସିକ । ୩୪ । ୬ ଅଘ—ପାପ ।

---

## କୋଲାହଳ ଚଉତିଶା

୧ । ୧ କମ୍ବୁ—ଶଙ୍ଖ । ୧ । ୫ କଞ୍ଜନୟନ—ପଦ୍ମଆକ୍ଷି । ୬ । ୧
ସୁମନ—ନସ୍ତିକ୍ରୀ । ୮ । ୪ ଅଖଣ୍ଡଳ—ଇନ୍ଦ୍ର । ୯ । ୫ ଝାଉବନେଦ
—ବନବିହାରୀ । ୯ । ୬ ଝସକେତନ—ମଦନ । ୧୩ । ୫ ଉଙ୍କ
ନାଗନ—କାଳୀୟ ସର୍ପ ଦଳନ । ୧୬ । ୩ ସୁଜାଣ—ବିବେକବନ୍ତ ।
୧୬ । ୫ ତନୁଉଦରୀ—କ୍ଷୀଣୋଦରୀ । ୧୯ । ୫ ଧନା—ଅଡ଼ିଆ
୨୨ । ୧ । ଫର୍ଦ୍ଦୋଳ—ଚଳ ହୋଇ । ୨୫—୬ ରତ୍ନବର—ରଥ ।
୩୫ । ୬ ଘୋର—ଦୁଃଖ ।

---

## ଜଳଦ ଚଉତିଶା

୪ । ୨ ଘାତୁଅ—ଶରବଦ୍ଧ । ୪ । ୪ ଘଟଣ ମୂରତ—ସୁନ୍ଦର ମୂର୍ତ୍ତି । ୭ । ୧ ଙ୍ଗଇ—ବୋଲ । ୭ । ୨ ଛ୍ଳନାଇ—ଛ୍ଳଣ୍ଡାଇ । ୭ । ୫ ଛନ୍ଦ୍ଅଳ—କପଟୀ । ୮ । ୪ ଯୋଗିନ୍ମ—ମାତା । ୯ । ୧ ଙ୍ଗାଡ଼େ—ବଳରେ । ୧୨।୨ ଢେଲ—ନଶୁଣୀ । ୧୩।୪ ତାଙ୍କ ଶାରଙ୍ଗଅ—ସର୍ପ ଅମୃତ୍ତ କଲ୍ୟାଣ ଅର୍ଥାତ୍ କାଳୀୟ ଦଳନ । ୧୩।୫ ଉରଗାବେ—ନୃପୃରକ୍ଷି । ୧୫।୨ ଅଶାରଘ୍ନ—ଦଗଦର୍ । ୧୫।୫ ଅନୂତ୍ତରେ—ଯଶୋଦା । ୧୬ । ୫ ତୁଳସୀ ବନ୍ଧନ—ଶ୍ରୀକୃଷ୍ଣ । ୧୭ । ୫ ଥାବର—ଗଛ । ୧୯ ୫ ଧରଣୀ ପତି—ଶ୍ରୀକୃଷ୍ଣ । ୨୪ । ୪ ଭଜନ୍ତ—ଭକ୍ତ, ଯେ ଭଜନା କରେ । ୩୨ । ୧ ଗୋପୀନ୍ଦ୍ର—ଗୋପୀମାନଙ୍କ । ୩୨ । ୨ ଶ୍ରାବଣ—ପୂର୍ଣ୍ଣମାର ଶ୍ରାଦ୍ଧ ନାଶ ପାଇଁ । ୩୪ । ୧ ମଙ୍ଗଳ—ବନ୍ଦାପନା ।

---

## କୃଷ୍ଣ ବିଚ୍ଛେଦ ଚଉତିଶା

୧ । ୧ଅଗ୍ନକତ—ଅବଶ । ୧ । ୩ କାକୁସ୍ତ ବାଣୀ—କାତର କଥା । ୪ । ୨ ଘନବରନା—ଘନଶ୍ୟାମ । ୭ । ୩ ଅଚେତନ—ଢୋଲାଢଲା, ଠାର । ୧୨ । ୨ ଅନାସ୍ତ—ଅନାଥ । ୧୨ । ୨ ଛମିଥ—ବଡ଼କୁନ୍ଦା । ୧୬ । ୨ ନବ ଯଉବନୀ—ନବ ଯୁବତୀ ।

---

## ନବଘନ ଚଉତିଶା

୧୧ । ୫ ଘରବୁଡ଼ା—ପର ସ୍ତ୍ରୀ ହରଣ କାରୀ । ୧୬ । ୧ ଭୁଟି—ଗାଳଦେଇ । ୧୭ । ୧ ଥେଷ୍ପଢ଼—ଦୁର୍ଦ୍ଦାନ୍ତ ଶେଖର । ୨୮ । ୪ ଭଙ୍ଗ ହେବେ—ବ୍ରତ ଭାଙ୍ଗିବେ ।

---

# କୃଷ୍ଣ ବିରହ ଚଉତିଶା

୧।୪ କୁସୁମ ବିଶିଖ—ଫୁଲଶର । ୨।୪ ଖେଦଜଳଧି—ଦୁଃଖସାଗର । ୪ । ୨ ବିଷାଇଲା—ବିଷ ବୋଲା ହୋଇଥିବା । ୧୨ । ୩ ଠଣ ସରସିଜ ମୁଖ—ସୁନ୍ଦର ପଦ୍ମମୁଖ । ୧୮ । ୨ ଭୁଜଙ୍ଗଧର ରିପୁ—ସର୍ପଧାରୀ ମହାଦେବଙ୍କ ଶତ୍ରୁ ଅର୍ଥାତ୍ ମଦନ । ୧୩ । ୪ ଢେଲାଇବ—ଛାଡ଼ିବ । ୧୪ । ୩ ଛମାଳ ଚୋଲଣି—ଥଟ୍ଟା ପରିହାସରେ । ୧୫ । ୧ ଅମଳ—ନିର୍ମଳ । ୧୬ । ୩ ଅତନୁ—ମଦନ ୧୭ । ୨ ତ୍ରିଦଶ—ଦେବତା । ୨୧ । ୧ ଦେହୁ—ଦେଉ । ୨୧ । ୩ ପରଭୃତବଚନୀ—କୋକିଳବଚନା । ୨୪ । ୧ କୁରଙ୍ଗଶାବାକ୍ଷି—କୁରଙ୍ଗଶାବାକ୍ଷି—କୁଆ ମୃଗ ନୟନ ପରି ନୟନ ଯାହାର । ୨୨ । ୨ ରଜନୀନାଥ—ଚନ୍ଦ୍ର ।

---

# ଚନ୍ଦ୍ରାବଳୀ ଚଉତିଶା

୨।୩ ମନ୍ଦୁରୁ—ଏକପ୍ରକାର ବସ୍ତ୍ର । ୩।୧ ଗଞ୍ଜଣ—ଖଞ୍ଜନ । ୪।୨ କାଥନ ଧନ୍ଦୁଆ—ରିଙ୍କପପରି । ୬ । ୨ ରସକନା ନାଗରୀମାନେ ଗୁଞ୍ଜନ୍ତ ଦେଲେ ସେ ନବଘନ । ୭ । ୪ ଫେର—ଫେରାଇ । ୯ । ୧ ଝୁଙ୍କିଥିଲ—ଲକ୍ଷିଥିଲ, ତହିଁ—ତାରେ । ୧୦ । ୩ ନୀପମୂଳଆ—କଦମ୍ବ ମୂଳଆ । ୧୧ । ୧ ଠେକନ୍ତନାଳଆ—ଯେ ଠେକ ଅର୍ଥାତ୍ ଗଳ୍ପ ଭାଙ୍ଗିଦିଅନ୍ତି । ୧୩ । ୧ ଡଙ୍କାଉଗଲା—ଯାଏକାମୁଣ୍ଡଲା । ୧୪ । ୩ ଛମପଣ—ଗର୍ବ । ୧୬ । ୩ ଢଗ—ସ୍ତ୍ରୀ । ୧୮ । ୨ ବନ୍ଧୁତ—ଉଚିତ । ୨ । ୩ ପୀରତି—ପ୍ରେମିକା । ୨୭ । ୪ ଦୁଠାର—ଠେକ ରଖିଅଛୁ, ବୁଢ଼ା ଯାନ୍ତାଣି । ୨୮ । ୧ ଲେଖ—ରତି । ୨୮ । ୨ ଲହୁଦେବା—ଲେଖିଦେବା । ୩୦ । ୧ ଶ୍ରୀବନ୍ତ—ପୁଲୁଷଣୀ ।

---

# କାଦମ୍ବିନୀ ଚଉତିଶା

୧ । ୨ କାଳକା—ମେଘ । ୧।୩ କାଦମ୍ବିନୀ—ମେଘ । ୪।୧ ଘନପୀନ ପୟୋଧରା—ସଘନସ୍ଥୂଳସ୍ତନା । ୭ । ୨ ସ୍ଥଳସ୍ଥପାଦ—ସ୍ଥଳରୂପଖଣ୍ଡ ୮ । ୨ ଜାଣମଣି—ବିବେକବନ୍ତ । ୯ । ୨ ଦ୍ରବ୍ୟଗୋଷ୍ଠି—ଦ୍ରବ୍ୟଗୋଷ୍ଠ । ୧୦ । ୧ ନନ୍ଦନ—ଅନଙ୍ଗ, ମଦନ । କଳାମେଘୀ ଶାଢ଼ୀ—କଳାଶାଢ଼ୀ ୧୧ । ୪ ମନୋଜ—ମଦନ । ୧୩ । ତାଙ୍କର ଅଙ୍ଗରେ କର ଉଚ୍ଚରେ ଭାବିଲେ କାମରୂପ ଅଙ୍ଗ ଅର୍ଥାତ୍ ସାପ ଜାତିଉଠେ । ତାଙ୍କୁ ଡ଼ମ୍ବରୁ କଣ୍ଠଭୂଷଣ ଯୀଣକଣ୍ଠ ମୋ ରମା ଓଷ୍ଠା ଅର୍ଥାତ୍ ଗାରଡ଼ିଆ ମୋର ଜୀବନ୍ କରେ । ୧୫ । ୨ ଅପସର—ଚଞ୍ଚଳ ୧୬ । ୪ ଉଦ୍ଭାନ୍ତଲ— ଉଲଠିଉ ଯାନ । ୨୧ । ୨ ସେ ରାତିକୁ ଅରାତି ଅର୍ଥାତ୍ ଶତ୍ରୁ ପରି ମନେ କରୁଥିବ । ୨୧ । ୪ ଜାତପ୍ରତ—ସକ୍ରନ୍ଦନ । ୨୬ । ୨ ଯୋଗୀନ୍ଦ୍ର—ମହାଦେବ । ୩୨।୧ ପାଲଟ—ପଟନ୍ତର । ୩୪।୧ କ୍ଷୀର ସିନ୍ଧୁ ସୁତା ପତି—ଲକ୍ଷ୍ମୀନାୟକ ଶ୍ରୀଜଗନ୍ନାଥ ।

---

# ଉଦ୍ଧବ ଚଉତିଶା

୧ । ୧ ଗୁଣି—ଭାବି । ୧ । ୫ ଫଣୀ—ସାପ । ୨ । ୧ ଖେଳାଉଡ଼— ଖେଳାଳି । ୨ । ୨ ରମ୍ଭାତରୁ—କଦଳୀ ଗଛ ଫଳ ଫଳି ଯେପରି ମରଯାଏ ଆମ୍ଭେମାନେ ସେହିପରି ହେଲୁଁ । ୨ । ୫ ପରମାନନ୍ଦ ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ପ୍ରୀତି ଖଣ୍ଡର ପ୍ରୀତି ରେ ଏ ପରଚସ୍ତୁ ଯେତେବେଳେ ପାଇଲୁଁ ସେତେବେଳେ ପ୍ରାଣ ରକ୍ଷିବା ସନ୍ଦେହ ହୋଇ ପଡ଼ିଲା । ୩ । ୧-୨ ଚାରୁ ଯଉବନୀ—ବିପୁଳ ଯୌବନୀ । ହିମ ଯେପରି କଜ୍ଜଳ ପ୍ରତିବିମ୍ବକୁ କୃଅ ପାଣିରେ ଦେଖି ହେଉଁ ପଡ଼ିଲା ଆମ୍ଭେ ସେହିପରି ଗୋବିନ୍ଦଙ୍କ

ନଟେ ପ୍ରେମରୂପ ବୃକ୍ଷକୁ ଭେଙ୍ଗି ପଡ଼ିଲୁଁ । ୩ । ୪ ଗତ ମଧୁମାଛି–
ଯେଉଁ ମଧୁମାଛି ମଧୁ ଖାଇ ବାହାର ଗଲାଣି । ୪ । ୫ ଦର୍ପଣ ମଧ୍ୟଗତ
ସୁନ୍ଦର ରୂପ ୍ ଯେପରି ଆଲିଙ୍ଗନ କରି ନ ହୁଏ ସେହିପରି ତାଙ୍କ ରୂପ
ଚିତ୍ରଅପେକ୍ଷା ଦିଶୁଥିଲେ ପୁଣା ତାକୁ ଆଲିଙ୍ଗନରେ ଆଣି ହେଉ ନାହିଁ ।
୫ । ୧-୨ ଶ୍ରୀକୃଷ୍ଣ ଚାଲି ଯିବାରୁ ପ୍ରେମ ବନ୍ଧ ହୋଇ ଗଲା ଓ ଆମ୍ଭ
ଆଖିରୁ କୃଷ୍ଣରୂପ ପ୍ରତିମା ଚାଲି ଯିବାରୁ ଆମ୍ଭେ ସେ ବନ୍ଧ ଆଉ ଫେଡ଼ି
ପାରିଲୁଁ ନାହିଁ । ୭ ଚନ୍ଦ୍ରରେ ଯେପରି ସର୍ବଦା କଳଙ୍କ ଥାଏ ସେହିପରି
କି ନିଦ କି ଜାଗରଣ ସବୁବେଳେ ତାଙ୍କ ରୂପ ଆମ୍ଭ ହୃଦରେ ଲାଖି
ରହିଅଛି । କିନ୍ତୁ କଣ ହେବ ଭାବିଲା ଧନ ଚିତ୍ରରେ ଲେଖା ହୋଇଥିବା
ଫଳ ପୁଷ୍ପ ପରି; ଭୋଗ କରି ହେବାର ଜିନିଷ ନୁହେ । ଚନ୍ଦ୍ରକୁ ଚକୋର
ଯିବା ଚାହିଁ ଚାହିଁ ମନ ବୋଧ କରେ କିନ୍ତୁ ଭ୍ରମର ନିଜର ଆକାଂକ୍ଷିତ
ଫୁଲରୁ ମଧୁ ନ ଖାଇଲେ ବୋଧ ହୁଏ ନାହିଁ । ୯ । ୧ ଝୁଲିଲା—
ଲାଗିଗଲା । ୧୧ । ୫ ଆମ୍ଭେ ମହାଦେବ ନୋହୁଁ ଯେ ତୁମ୍ଭେ ଯୋଗ
ଶିଖାଇଲେ ଆମ୍ଭେ ପସନ୍ଦ କରିବୁଁ । ୧୪–କଷ୍ଟସାଧ୍ୟ ଯୋଗ କରି କୃଷ୍ଣଙ୍କୁ
ପାଇବାର ଯାହା ଉପଦେଶ ଦେଲ ତାହା ବୃଥା ନୁହେ କିନ୍ତୁ
ସେ କାଳିଆ କାହ୍ନୁକୁ ଯେ ଆଖି ଆଗରେ ଦେଖୁଥିବ ସେ ଯୋଗ
ଯୋଗରୁ କଣ ପାଇବ ?

୧୬ । ୧ ଗୁଞ୍ଜାଫଳ—କାଇଁଚ । ୧୬ । ୪ ଭୁଛି—ଚଳହୋଇ ।
୧୭ । ୧ ଥୋକାଏ ଛଣ୍ଟ । ୧୭ । ୨ ଦଣବାପ—ଭିଲନ୍ । ୨୧ । ୨
ବାର ବରଷ ମଉଳା ପୋଷେ । ଖୁନ୍ଦୁଡ଼ା ଦେଖିଲେ ଜଙ୍ଗଲରେ ବସେ ।
୨୪ । ୧ ଜଳିଜଳିକା—ଲୁହରେ ଅନ୍ଧ । ୨୪ । ୨ କୁଣ୍ଠିତ—ରୁନ୍ଧ ।
୨୬ । ୧ ଅମ୍ବିକା—ଦୁର୍ଗା । ୨୯ । ୪ ଯଶା—ଦଶା । ୩୧ । ୫
ଗୋପିକା ଗୋଷ୍ଠକେ କୋଟିଏ ମୁନି ଏହା ଗୁପ୍ତ ହୋଇଥାନ୍ତା—

ଚୂଲରେ ଛପା ହୋଇଅଛି । ୩୨ । ଗୋପରୁ ସ୍ତ୍ରୀ ଲୋକଙ୍କ ବସ୍ତ୍ର ଓ ଅଲଙ୍କାର ଯୋଗାଉଥିବା ବ୍ୟବସାୟୀମାନେ ବାହାର ହେଲେଣି କାରଣ ଗୋପୀମାନେ ଆଉ ଅଲଙ୍କାର ପ୍ରତି ଉଦାସୀନା ହୋଇ ପଡ଼ିଲେଣି । ୩୩ । ୫ ଘାସ ପବୁଠଙ୍ଗି ଠାଣ ଜନପ ।

---

## ବିଷ୍ଣୁଦାସଙ୍କ ଚଉତିଶା

୧ । ୧ ଭୁରଙ୍ଗ ଅଙ୍ଗବଦନୀ—ଚନ୍ଦ୍ରବଦନୀ । ୨ । ୭ ଖଣ୍ଡେନ୍ଦୁଶେଖର —ମହାଦେବ । ୫ । ୫ ନୀରଜ ଲୋଚନୀ—ପଦ୍ମନୟନା । ୨୨ । ୧ ଅରୁଣା ଅଧରୀ—ଅନନ୍ଦମୟ ବଦନା । ୩୧ । ୭ ଶୂଳଧର—ମହାଦେବ । ୩୩ । ୭ ବେପଥ—କମ୍ପ ।



**ପ୍ରାଚୀ ସମିତି ପ୍ରକାଶିତ**

ଭଲ ବହିଗୁ କେତେ ଖଣ୍ଡ

# ଚଉତିଶା ମଧୁଚକ୍ର

**ମଧୁର ଚଉତିଶାମାନଙ୍କର ସମାବେଶ**

| | |
|---|---|
| ପ୍ରଥମ ଖଣ୍ଡ | ଠ ୦ ୪ |
| ଦ୍ୱିତୀୟ ଖଣ୍ଡ | ଠ ୦ ୪ |
| ତୃତୀୟ ଖଣ୍ଡ | ଠ ୦ ୪ |
| ଚତୁର୍ଥ ଖଣ୍ଡ | ଠ ୦ ୪ |

# ରାମବିଭା

ସୁମଧୁର ଲଳିତ ଭାଷାରେ ଭଗବାନ ରାମଚନ୍ଦ୍ରଙ୍କର

ଶୈଶବ ପୂର୍ଣ୍ଣ ବାଲ୍ୟ ଜୀବନ ଓ ବିବାହ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି ।

ନୀଳ ଜଳଧର କାନ୍ତି, ରୁଚିର ଶରୀର ଭାନ୍ତି ।

ନୟନ କମଳ ଫୁଲ, ରୂପେ ଅତୁଲ୍ୟ ସେ ।୬ ଷ ୨୧ ।

ପିନ୍ଧିଣ ପୀତ ଦୁକୂଳ, ମଉଳ ମାଧବୀ ଫୁଲ ।

କଟିକଟେ ପରବେଶ ମଦନ ବେଶ ସେ ।୬ ଷ ୨୨ ।

ମୂଲ୍ୟ ଅଠଅଣା ମାତ୍ର ।

# ରହସ୍ୟ ମଞ୍ଜରୀ

ସରସ ସୁନ୍ଦର କାବ୍ୟ ପଢ଼ିଲେ ମନରୁ ଯାଏ ନାହିଁ, ଉଚ୍ଚାରିଲେ ଗୋଟିକଯାକ ଉଚ୍ଚାରିବାକୁ ଇଚ୍ଛା ହୁଏ । ମାତ୍ର ନବମ ଛାନ୍ଦରୁ ଦୁଇଟି ପଦ ଦିଆଗଲା ।

ସଜଳ ଜଳଦ କାନ୍ତି, କାଳମଣି ଜିଣି ଭାନ୍ତି

ଅମଳ କମଳ, ମୁଖ ମଞ୍ଜୁଳ ଅଳକ ଅଳକାପନ୍ତି ।

କୁଞ୍ଚିଳ କୁନ୍ତଳ ଚୂଳେ, ରଞ୍ଜିତ ବିବିଧ ଫୁଲେ

ବାନ୍ଧେ ଝଳମଳ ମୟୂର ପୁଚ୍ଛ ମତ୍ତ ମଧୁକର ଭୁଲେ ।

ମୂଲ୍ୟ ବାରଅଣା ମାତ୍ର ।

## ଆଉ କେତେ ଗୋଟି ଭଲ ପୁରାତନ ପୁସ୍ତକ ସୁନ୍ଦର ଛାପା

| | |
|---|---|
| ବିଦଗ୍ଧ ଚିନ୍ତାମଣି ସଟୀକ ପ୍ରଥମ ଭାଗ | ଟ ୧୮ |
| ରସକଲ୍ଲୋଳ | ଟ ୧୫ |
| ମଥୁରାମଙ୍ଗଳ | ଟ ୧୫ |
| ପୂର୍ଣ୍ଣତମ ଚନ୍ଦ୍ରୋଦୟ | ଟ ୦ ୫ |
| ଗୋପୀଭାଷା (ବୃହତ୍) | ଟ ୧୮ |
| ପ୍ରେମପଞ୍ଚାମୃତ | ଟ ୦ ୫ |
| ରସବାରିଧି | ଟ ୦ ୫ |
| ନଳ ଚରିତ | ଟ ୦ ।/ |
| ଶଶିସେଣା | ଟ ୦ ୫ |
| ଉଷାଭିଳାଷ | ଟ ୦ ୫ |
| ରୁକ୍ମିଣୀ ବିଭା | ଟ ୦ ୫ |
| ଶିବସ୍ୱରୋଦୟ (ପରମ ଦୁର୍ଲ୍ଲଭ ଗ୍ରନ୍ଥ ପଢ଼ିଲେ ଶତାଧିକ ବର୍ଷ ବଞ୍ଚିବାର ଉପାୟ ପାଇବେ) | ଟ ୦ । |

ମହିମା ଧର୍ମାବଲମ୍ବୀମାନଙ୍କର ଶ୍ରେଷ୍ଠ ସମ୍ପଦ

| | |
|---|---|
| ମହିମାଧର୍ମ୍ମ ପ୍ରତିପାଦକ | ଟ ୨୮ |
| ଜୟକୃଷ୍ଣ ଭଜନ | ଟ ୦ ୫ |

ଏକମାତ୍ର ପ୍ରାପ୍ତିସ୍ଥାନ :—

**ପ୍ରାଚୀ ବୁକ୍ ଷ୍ଟଲ**

ପୋଃ ଅଃ ଗୃନ୍ଦକାଚୌକ,

କଟକ